୨୦୦୫ : ଏକବିଂଶ ଭୁବନେଶ୍ୱର ପୁସ୍ତକମେଳା ଉପଲକ୍ଷେ

# ଗଳ୍ପ ସଂକଳନ

ସଂପାଦନା : ଯୁଗଳ କିଶୋର ଦତ୍ତ

୫ ଟଙ୍କା



ଏକବିଂଶ ଭୁବନେଶ୍ୱର ପୁସ୍ତକମେଳା




ଉପଲକ୍ଷେ ପ୍ରକାଶିତ

# ଗଳ୍ପ ସଂକଳନ

ସମ୍ପାଦନା

ଯୁଗଳ କିଶୋର ଦତ୍ତ

ଏମାନଙ୍କ ଗଳ୍ପ

ବିଭୂତି ପଟ୍ଟନାୟକ
ସାତକଡ଼ି ହୋତା
ବିଜୟକୃଷ୍ଣ ମହାନ୍ତି
ବରେନ୍ଦ୍ରକୃଷ୍ଣ ଧଳ
କ୍ଷୀରୋଦ ଦାସ
ଯୁଗଳ କିଶୋର ଦତ୍ତ

ମୂଲ୍ୟ: ୫ ଟଙ୍କା

ପ୍ରଚ୍ଛଦ ଓ ପୃଷ୍ଠାସଜ୍ଜା ସରୋଜ ବଳ

# ସତୀତ୍ୱ

## ବିଭୂତି ପଟ୍ଟନାୟକ

:ବହି ପୁରୁଣା ହେଲେ ତାର ଦାମ ବଢ଼େ, କିନ୍ତୁ ବୋହୂ ପୁରୁଣା ହେଲେ ତା'ର ଦାମ କମେ । ଠିକ୍ ନୁହେଁ ?

ଜରାଜୀର୍ଣ୍ଣ ପୁସ୍ତକରୁ ନିଜର ଦୃଷ୍ଟି ଉତ୍ତୋଳନ କରି ଗବେଷକ ସୀତାକାନ୍ତ ନିଜର ବର୍ଷିୟସୀ ପତ୍ନୀର ମୁହଁକୁ ଚାହିଁଲେ ।

ସୌଦାମିନୀଙ୍କ ମୁହଁରେ ଭାଙ୍ଗପଡେ । ମାଂସପେଶୀ ହୁଗୁଳା ହୋଇଯାଏ । ବହି ପୁରୁଣା ହେଲେ ତାର ରଙ୍ଗ ହଳଦିଆ ବର୍ଣ୍ଣ ଧାରଣ କରେ । ପୃଷ୍ଠା ଛାଡ଼ିଛାଡି ଯାଏ । ଆଉ ଯେଉଁ ବହି ବିର୍ତମାନ ବହୁ କଷ୍ଟରେ ପଢୁଛନ୍ତି ସେ ବହିଟିର ସବୁ ପୃଷ୍ଠାରେ ଘୁଣପୋକର ଫୁଟା ଦାଗ ।

ସୌଦାମିନି ପ୍ରସଙ୍ଗ ପରିବର୍ତ୍ତନ କଲେ ।

: କେବେ ରାତି ହେବ ? ରୁଟି ଶୁଖି କାଠ, କ୍ଷୀର ଦୁଇଥର ଗରମ କରି ରଖିଲିଣି । ଥଣ୍ଡା ହୋଇଗଲାଣି । ଥଣ୍ଡା କ୍ଷୀର ଥୁ ଥୁ କରି ଢ଼ାଳି ଦେବ । ପତ୍ନୀଙ୍କ କଣ୍ଠରେ ଏଥର ଅନୁଯୋଗର ଉତ୍ତାପ ସଂଚାରିତ ହେଲା ।

ସୀତାକାନ୍ତ ସେତେବେଳଯାଏ ସୁଦ୍ଧା ସ୍ତ୍ରୀଙ୍କ ସେଇ ପ୍ରଥମ କଥା ଭାବୁଛନ୍ତି । ପୁରୁଣା ବହି ଆଉ ପୌଢ଼ା ରମଣୀ ମଧ୍ୟରେ କି ଚମତ୍କାର ମେଳନ ଯୁକ୍ତ ପ୍ରଶ୍ନ ?

ଅଥଚ ଏଭଳି ଧାରଣାର ଗର୍ଭଧାରିଣୀ ହେବା ପାଇଁ ସୌଦାମିନୀଙ୍କର ଶିକ୍ଷାଗତ ଯୋଗ୍ୟତା ।

ଗବେଷକ ସୀତାକାନ୍ତ ନିଜ ମନକୁ ନିଜେ ବୁଝାଇଲେ - ନାରୀ ପାଠ ନପଢ଼ି ସୁଦ୍ଧା ଯେପରି ଜନନୀ ହୋଇପାରେ, ବିନା ଶିକ୍ଷାରେ ମଧ୍ୟ ସେହିଭଳି ନୂଆ ନୂଆର ଚିନ୍ତାର ଜନ୍ମଦାତ୍ରୀ ହୋଇପାରେ ।

ସୀତାକାନ୍ତଙ୍କର ବୟସ ହୋଇଯାଇଛି । କିନ୍ତୁ ଗବେଷଣା କାର୍ଯ୍ୟରୁ ସେ ନିବୃତ୍ତ ହୋଇ ନାହାଁନ୍ତି । ଜୀବନଟା ସାରା ପିଲାଙ୍କୁ ଇତିହାସ ପଢ଼ାଇ ପଢ଼ାଇ ବିତିଗଲା । ଇତିହାସ ଗବେଷଣା ବାକି ରହିଥିଲା ବାର୍ଦ୍ଧକ୍ୟ ପାଇଁ ।

ଆଖିର ଦୃଷ୍ଟି ଶକ୍ତି କମି ଆସୁଛି । ଖୁବ୍ ମୋଟା ଲେନ୍ସର ଚଷମା ପିନ୍ଧୁଛନ୍ତି ସୀତାକାନ୍ତ ।

ଚଷମା କାଚର ଶକ୍ତି ଜରିଆରେ ଅତୀତ ଉତ୍କଳର ସାମାଜିକ ପୃଷ୍ଠ ଭୂମିରେ ସେ ଓଡ଼ିଆ ନାରୀର ଚାରିତ୍ରିକ ବୈଶିଷ୍ଟ୍ୟ ବୁଝିବାକୁ ଚେଷ୍ଟା କରୁଛନ୍ତି ।

ଯେଉଁ ପ୍ରାଚୀନ ଗ୍ରନ୍ଥଟି ଏଇ କେତେଦିନ ହେଲା ତାଙ୍କ ଆଖିରୁ ନିଦ୍ରା ଅପହରଣ କରି ନେଇଛି, ସେଇଟି ହେଉଛି ଇଂରେଜୀ ଶାସନ ପ୍ରାକ୍ କାଳରେ ଜଣେ ଓଡ଼ିଆ ରମଣୀର ଆତ୍ମଜୀବନୀ । ବହିଟି କିପରି ଭାବରେ ତାଙ୍କ ହାତକୁ ଆସିଥିଲା, ସେକଥା ତାଙ୍କର ସ୍ମରଣ ନାହିଁ । କିନ୍ତୁ ବହିଟିର ଛପା ତାରିଖ ଦେଖି ଖୁବ୍ ଉଲ୍ଲସିତ ହୋଇ ଉଠିଥିଲେ । ବହିଟି ତାଙ୍କର ମନଯୋଗ ଆକର୍ଷଣ କରିଥିଲା ।

ଭଦ୍ରମହିଳାଙ୍କ ବାପା ବାଲେଶ୍ୱର ଖ୍ରୀଷ୍ଟିୟାନ୍ ମିଶନାରୀର ଜଣେ ପ୍ରଚାରକ ଥିଲେ । ଯେଉଁ ଅଳ୍ପକେତେ ଜଣ ସେତେବେଳେ ପ୍ରଭୁ ଯୀଶୁଖ୍ରୀଷ୍ଟଙ୍କ ଜଗତର ତ୍ରାଣକର୍ତ୍ତା ବୋଲି ଗ୍ରହଣ କରି ବାଲେଶ୍ୱରରୁ ହିନ୍ଦୁ ଧର୍ମ ତ୍ୟାଗ କରିଥିଲେ ଭଦ୍ରମହିଳାଙ୍କ ଜନକ ନିଶାକର ରାଉତ ଥିଲେ ସେମାନଙ୍କ ମଧ୍ୟରେ ଅନ୍ୟତମ ।

କିନ୍ତୁ ନିଶାକର ଖ୍ରୀଷ୍ଟିଆନ୍ ଧର୍ମ ଗ୍ରହଣ କରିଥିଲେ ସୁଦ୍ଧା ମାଆ ରମା ସୁନ୍ଦରୀ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଥିଲେ ନୈଷ୍ଠିକ ହିନ୍ଦୁ । ପାଞ୍ଚବର୍ଷର କନ୍ୟା ସ୍ୱର୍ଣ୍ଣଲତାକୁ ସାଙ୍ଗରେ ଧରି ସେ ବାପଘରକୁ ଚାଲିଯାଇଥିଲେ ।

ସ୍ୱର୍ଣ୍ଣଲତା ବାଲେଶ୍ୱର ବାଳିକା ବିଦ୍ୟାଳୟରେ ପାଠ ପଢ଼ିଲାବେଳେ ବାପା ନିଶାକର ତା ସହିତ ନିୟମିତ ଦେଖା କରୁଥିଲେ ।

ବାପ ଝିଅଙ୍କ ଭିତରେ କଥାବସ୍ତୁର ପ୍ରାଧାନ୍ୟ ଥିଲା ହିନ୍ଦୁ ଧର୍ମର ଅସାରତା ଏବଂ ଖ୍ରୀଷ୍ଟ ଧର୍ମର ମହତ୍ୱ ପ୍ରତିପାଦନ ।

ସ୍ୱର୍ଣ୍ଣଲତା ଖ୍ରୀଷ୍ଟଧର୍ମର ମହତ୍ତ୍ୱକୁ ଅସ୍ୱୀକାର କରୁ ନଥିଲେ ସୁଦ୍ଧା ହିନ୍ଦୁ ଧର୍ମ ତ୍ୟାଗ କରିବାକୁ ରାଜି ହୋଇନଥିଲେ ।

ଶେଷରେ ଧର୍ମତତ୍ତ୍ୱ ଛାଡି ନିଶାକର ଝିଅକୁ ଖ୍ରୀଷ୍ଟ ଧର୍ମର ଅର୍ଥତତ୍ତ୍ୱ ବୁଝାଇଥିଲେ । ଖ୍ରୀଷ୍ଟ ଧର୍ମ ଗ୍ରହଣ କଲେ ମିଶନାରୀ କଲିକତାରେ ତାର ପଢ଼ା ଖର୍ଚ୍ଚ ବହନ କରିବେ ଏବଂ ସେ ବଡ଼ ଏକ ସରକାରୀ ଚାକିରୀ ଲାଭକରି ପିତା ତଥା ଜନ୍ମଭୂମିର ମୁଖ ଉଜ୍ଜ୍ୱଳ କରିବ, ଏଇଭଳି ଯୁକ୍ତିଥିଲା ନିଶାକରଙ୍କର ।

କିନ୍ତୁ ରମାସୁନ୍ଦରୀଙ୍କ ପ୍ରଭାବରୁ ଶେଷ ପର୍ଯ୍ୟନ୍ତ ସ୍ୱର୍ଣ୍ଣଲତା ଖ୍ରୀଷ୍ଟଧର୍ମ ଗ୍ରହଣ କରି ନଥିଲେ ।

ତାପରେ ଓଡ଼ିଶାରେ ପ୍ରତିଷ୍ଠିତ ହେଲା ଇଂରାଜୀ ଶାସନ । ଜଣେ ନିମକମାହାଲ୍ ସିରସ୍ତାଦାର ମଦନ ମୋହନ ଦାସଙ୍କ ସହ ସ୍ୱର୍ଣ୍ଣଲତାଙ୍କ ବିବାହ ହୋଇଥିଲା ।

ତା'ପରବର୍ତ୍ତୀ କେତେ ପୃଷ୍ଠା ଛିଡ଼ିଯାଇଛି ।

ସୀତାକାନ୍ତ ପୃଷ୍ଠା ମିଳାଇ ଦେଖିଲେ ପ୍ରାୟ ଚବିଶ ପୃଷ୍ଠା । ଶେଷରେ ସ୍ୱର୍ଣ୍ଣଲତା ଲେଖିଛନ୍ତି:

ବାପାଙ୍କ ବ୍ୟାକୁଳ ନିବେଦନ, ଉଚ୍ଚଶିକ୍ଷା, ବଡ଼ ଚାକିରୀର ଲୋଭ ଏଡ଼ାଇ ମୁଁ ମାଆଙ୍କ ଉପଦେଶମାନି ସ୍ୱଧର୍ମ ଛାଡିନଥିଲି । କିନ୍ତୁ ହିନ୍ଦୁ ଧର୍ମ ମୋ ତ୍ୟାଗର ମୂଲ୍ୟ କ'ଣ ଦେଲା ? ମୋ ସ୍ୱାମୀ ମଦନମୋହନ ମତେ ତୁଚ୍ଛାଟାରେ କୁଳଟା ବୋଲି କହି ଘରୁ ତଡ଼ି ଦେଲା ପରେ ହିନ୍ଦୁ ପଡୋଶୀମାନେ ମୋ ମୁହଁ ଚାହିଁବା ପାପ ବୋଲି ଭାବିଲେ । ମୁଁ କାହା ଦାଣ୍ଡ ବାରଣ୍ଡାକୁ ଉଠିଗଲେ ସେମାନେ ସେ ଅପବିତ୍ର ଯାଗାକୁ ପବିତ୍ର କରିବା ପାଇଁ ଗୋବର ପାଣି ଛିଞ୍ଚିଲେ । ଧୋବା ମୋର ଲୁଗା ଧୋଇବାକୁ ନେଲାନାହିଁ । ଦୋକାନୀ ମତେ ସଉଦା ଦେଲେନାହିଁ ।

ଏତିକିବେଳେ ମୋ ବାପାଙ୍କ କଥା ମୋର ମନେ ପଡ଼ିଲା । ଜଗତର ତ୍ରାଣକର୍ତ୍ତା ଯୀଶୁହିଁ ସବୁ ପାପୀଙ୍କୁ କ୍ଷମା କରନ୍ତି । ଆଦରରେ ନିଜ କୋଳକୁ ଟେକି ନିଅନ୍ତି । ମୁଁ କିଛି ପାପ କରିନଥିଲେ ମଧ୍ୟ ସମାଜ ଆଖିରେ ପାପୀ ହେଲି । ତେଣୁ ମୁଁ ଦିନେ ଚର୍ଚ୍ଚରେ ପାଦ୍ରୀଙ୍କ ପାଖରେ ସବୁକଥା ଖୋଲି କହିଲି । ବାପା ସେତେବେଳେ ଜୀବିତ ନଥିଲେ । କିନ୍ତୁ ପାଦ୍ରୀ ମହୋଦୟ ନିଜ ବାପାଙ୍କ ଠାରୁ ବଳି ଅଧିକ ସ୍ନେହରେ ମତେ ଗ୍ରହଣ କଲେ ।

ଖ୍ରୀଷ୍ଟଧର୍ମ ଗ୍ରହଣ କରି ମୁଁ ନୂତନ ଜୀବନ ଲାଭକଲି ।

ସୀତାକାନ୍ତ ବହିର ଏ ଶେଷ କେତେଧାଡ଼ି ଯେତେ- ଥର ପଢ଼ିଛନ୍ତି, ସେତେଥର ତାଙ୍କ ଆଖିଲୁହରେ ଛଳ ଛଳ ହୋଇ ଆସିଛି ।

ସେ ନିଜକୁ ନିଜେ ପ୍ରଶ୍ନ କରିଛନ୍ତି – ଝିଅଟି କଣ ପ୍ରକୃତରେ ପର ପୁରୁଷ ପ୍ରତି ଆସକ୍ତ ଥିଲା ? ବିବାହିତା ଜୀବନରେ ନୀତି ନିୟମର ଲକ୍ଷଣଗାର ଡେଇଁ ଯାଇଥିଲୁ ? ତାହେଲେ ସେ ନିଜକୁ ନିରପରାଧିନୀ ବୋଲି ଦୃଢ଼ ସ୍ୱରରେ କହୁଛି କିପରି ?

ସୀତାକାନ୍ତ ଇତିହାସର ଅଧ୍ୟାପକ, କିନ୍ତୁ ନାରୀ ମନସ୍ତତ୍ତ୍ୱର ଗବେଷକ ନୁହନ୍ତି । ସେଥିପାଇଁ ସେ ପ୍ରାଚୀନ ଗ୍ରନ୍ଥର ଛିନ୍ନ ବତ୍ରିଂଶ ପୃଷ୍ଠା ତାଙ୍କ ଆଖିରେ ଏକ ପ୍ରହେଳିକା ହୋଇ ରହି ଯାଏ । ସେ ରହସ୍ୟର ମାୟାଜାଲ ଭେଦ କରି ପାରନ୍ତି ନାହିଁ ।

ବାଲେଶ୍ୱର ଗଳି କନ୍ଦି, କଲେକ୍ଟରଙ୍କ ଅଫିସ୍‌ରେ ପୁରୁଣା ଦଲିଲ ଘାଣ୍ଟି ନିଶାକର ରାଉତ, ମଦନ ମୋହନ ଦାସ, ରମା ସୁନ୍ଦରୀ ଆଉ ସ୍ୱର୍ଣ୍ଣଲତାଙ୍କ ସଂପର୍କରେ ଯଦି କିଛି ତଥ୍ୟ ମିଳେ, ତାର ଅନୁସନ୍ଧାନ କରିଥିଲେ ସୀତାକାନ୍ତ । ବାଲେଶ୍ୱର ଚର୍ଚ୍ଚରେ କେବଳ ନିଶାକର ରାଉତଙ୍କ ସଂପର୍କରେ କିଛି ତଥ୍ୟ ମିଳିଲା । କିନ୍ତୁ ସ୍ୱର୍ଣ୍ଣଲତାଙ୍କ ଆତ୍ମଜୀବନୀରୁ ହଜି ଯାଇଥିବା ବତିଶି ପୃଷ୍ଠାର ଶୂନ୍ୟସ୍ଥାନ ପୂରଣ କରିବା ପାଇଁ କୌଣସି ତଥ୍ୟ ସେଥିରେ ନଥିଲା ।

ସ୍ୱର୍ଣ୍ଣଲତାଙ୍କ ଚରିତ୍ରକୁ କାହିଁକି ସନ୍ଦେହ କରି ମଦନ ମୋହନ ତାକୁ ବିତାଡ଼ିତ କରିଥିଲେ, କେଉଁ ପରିସ୍ଥିତିରେ ସେ ହିନ୍ଦୁଧର୍ମ ଛାଡ଼ି ଖ୍ରୀଷ୍ଟଧର୍ମ ଗ୍ରହଣ କରିଥିଲେ, ସେ ସଂପର୍କରେ କେହି କିଛି କହି ପାରିଲେ ନାହିଁ ।

ଦୀର୍ଘ ଦେଢ଼ଶହ ବର୍ଷର ଇତିହାସ ବିସ୍ମୃତିର ବାଲିଚର ମଧ୍ୟରେ ଚାପା ପଡ଼ି ଯାଇଛି ।

କେତେ ବାଲି ଘାଣ୍ଟିବେ ସୀତାକାନ୍ତ ।

କିନ୍ତୁ ଯେତେ ଚେଷ୍ଟା କଲେ ମଧ୍ୟ ସ୍ୱର୍ଣ୍ଣଲତାଙ୍କୁ ସେ ଭୁଲି ପାରିଲେ ନାହିଁ । ସେହି ଭାଗ୍ୟବିଡ଼ମ୍ବିତା ନାରୀ ତାଙ୍କ ମନର ଦରଜାରେ ସମୟ ଅସମୟରେ କରାଘାତ କରିବାକୁ ଲାଗିଲା ।

ସ୍ୱର୍ଣ୍ଣଲତା କଲେଜରେ ପଢ଼ି ନଥିଲେ ସୁଦ୍ଧା ସେ ସମୟରେ ଓଡ଼ିଶାର ଅନୁନ୍ନତ ଶିକ୍ଷା-ବ୍ୟବସ୍ଥା ଦୃଷ୍ଟିରୁ ନିଶ୍ଚୟ ଥିଲେ ସେ ଜଣେ ଶିକ୍ଷିତା ମହିଳା । ବାହାର ଜଗତ ସହିତ ତାଙ୍କର ସଂପର୍କ ସ୍ୱାଭାବିକ ଥିଲା । ସେହି ସୁଯୋଗରେ ହୁଏତ କୌଣସି ଲମ୍ପଟ ପୁରୁଷ ତାଙ୍କ ସହ ଘନିଷ୍ଠ ହେବାକୁ ଚେଷ୍ଟା କରିଥିଲା । ମଦନ ମୋହନ ସ୍ତ୍ରୀ ଚରିତ୍ରକୁ ସଂଦେହ କରି ହୁଏତ ଘରୁ ତାଙ୍କୁ ବିତାଡ଼ିତ କରିଥିଲେ ।

ସ୍ୱର୍ଣ୍ଣଲତାଙ୍କ ପ୍ରେମିକ କଣ ଥିଲେ ଜଣେ ଖ୍ରୀଷ୍ଟିଆନ୍ ।

ସମାଜରୁ ବହିଷ୍କୃତ ହେଲା ପରେ ସେ କଣ ସ୍ୱର୍ଣ୍ଣଲତାଙ୍କୁ ଖ୍ରୀଷ୍ଟଧର୍ମରେ ଦୀକ୍ଷିତ ହେବା ପାଇଁ ପ୍ରରୋଚିତ କରିଥିଲେ ?

କାଳ୍ପନିକ ସଂଦେହର ମେଘରେ ସୀତାକାନ୍ତଙ୍କ ମନ ଆଚ୍ଛନ୍ନ ହୋଇଯାଏ । କିନ୍ତୁ ସମାଧାନର କୌଣସି ସୂତ୍ର ମିଳେ ନାହିଁ ।

ଦିନେ ସୌଦାମିନୀ ପଚାରିଲେ - ତମେ ରାତି ଦିନ କଅଣ ଏତେ ଭାବୁଛ ?

ସୀତାକାନ୍ତ ସ୍ୱର୍ଣ୍ଣଲତା ଉପାଖ୍ୟାନ ବର୍ଣ୍ଣନା କରି ପଚାରିଲେ - କହିଲ ଦେଖି ସ୍ୱର୍ଣ୍ଣଲତା କଣ ପ୍ରକୃତରେ ଅନ୍ୟ କୌଣସି ପର-ପୁରୁଷ ପ୍ରତି ଆସକ୍ତ ଥିଲେ ? ତାହାହେଲେ ତାଙ୍କୁ ଅସତୀ ବୋଲି କହି ସ୍ୱାମୀ ତାଙ୍କର ଘରୁ ତଡ଼ି ଦେଲେ କାହିଁକି ?

ସ୍ୱାମୀଙ୍କ ପ୍ରଶ୍ନ -କଣ୍ଟକିତ ମୁହଁକୁ ଚାହିଁ ସୌଦାମିନୀ ହସିଲେ ।

କହିଲେ- ଯେଉଁ ସମୟ କଥା ତମେ କହୁଛ, ସେ ସମୟରେ ପର-ପୁରୁଷ ଆସକ୍ତ ନ ହୋଇ ସୁଦ୍ଧା ଜଣେ ନାରୀ ଅସତୀ ବୋଲି ସମାଜରେ ନିନ୍ଦିତ ହେଉଥିଲା । ଅସହାୟା ନାରୀମାନେ ସେ ନିନ୍ଦା ଅପମାନକୁ ସହ୍ୟ କରି ନପାରି କଟକ ତେଲେଙ୍ଗା ବଜାରରେ ରୂପର ପସାର ମେଲି ଦେଉଥିଲେ, ନ ହେଲ ବୃନ୍ଦାବନରେ ବୈଷ୍ଣବୀ ଜୀବନ ଯାପନ କରୁଥିଲେ । କିନ୍ତୁ ସ୍ୱର୍ଣ୍ଣଲତା ଥିଲା ଶିକ୍ଷିତା ନାରୀ । ତାର ବାପା ଖ୍ରୀଷ୍ଟିୟାନ୍ ହୋଇ ସାରିଥିଲେ । ରକ୍ଷଣଶୀଳ ହିନ୍ଦୁ ସମାଜର ଅତ୍ୟାଚାରରୁ ମୁକ୍ତି ପାଇ ସୁସ୍ଥ ସାମାଜିକ ଜୀବନ ଯାପନ କରିବା ପାଇଁ ଖ୍ରୀଷ୍ଟଧର୍ମ ଗ୍ରହଣ ସେତେବେଳେ ଥିଲା ସହଜ ପନ୍ଥା । ମନେ ରଖ, କାଗଜ ପତ୍ରରେ ନ ହେଲେ ସୁଦ୍ଧା ଲୋକ ମତ ଅନୁସାରେ ଖ୍ରୀଷ୍ଟଧର୍ମ ସେତେବେଳେ ଥିଲା ରାଜଧର୍ମ ।

ସୀତାକାନ୍ତ ତଥାପି ପତ୍ନୀଙ୍କ କଥାର ତାତ୍ପର୍ଯ୍ୟ ବୁଝି ପାରିଲେ ନାହିଁ ।

ପଚାରିଲେ - ଜଣେ ପର ପୁରୁଷ ପ୍ରତି ଆସକ୍ତ ନ ହୋଇ ସୁଦ୍ଧା ଜଣେ ନାରୀକୁ ଅସତୀ

ବୋଲି କିପରି ହିନ୍ଦୁ ସମାଜ ଶାସ୍ତି ଦେଇ ପାରିବ ?

ସୌଦାମିନୀ ମୃଦୁ ହସି କହିଲେ -

: ତମେ ଜଣେ ସାମାଜିକ ଲୋକ, କିନ୍ତୁ ତମ ସମାଜର ଚରିତ୍ର ତମେ ଠିକ୍ ଭାବରେ ବୁଝିନାହଁ । ସ୍ୱର୍ଣ୍ଣଲତା କେଉଁ ସମୟରେ ଅସତୀ-ଅଭିଯୋଗରେ ସ୍ୱାମୀ-ପରିତ୍ୟକ୍ତା ହୋଇଥିଲା ମୁଁ ଜାଣେ ନାହିଁ । କିନ୍ତୁ ମୋ ଜେଜେମାଆଙ୍କ ଠାରୁ ସେଇ ସମୟର ଅନ୍ୟ ଏକ ଘଟଣା ମୁଁ ଶୁଣିଛି ।

ତାଂକ ଗ୍ରାମର ଜଣେ ଯୁବତୀ-ବିଧବା ସ୍ୱାମୀର ଚିତାନଳରେ ପ୍ରବେଶକରି ସତୀ ହେଲାନାହିଁ ବୋଲି ଗ୍ରାମରେ ପଞ୍ଚାୟତ ବସି ତାକୁ ଅସତୀ ବୋଲି ଘୋଷଣା କରିଦେଲା । ମନେରଖ, ସେତେବେଳକୁ ସତୀଦାହ ବିରୋଧୀ ଆଇନ୍ ଇଂରେଜ ସରକାର ଜାରୀ କରି ସାରିଥିଲେ । ସେଥିପାଇଁ ଯୋର୍ କରି ତାକୁ ସ୍ୱାମୀର ଚିତା ନିଆଁରେ ପୋଡ଼ି ଦିଆଗଲା ନାହିଁ । କିନ୍ତୁ ସମାଜରୁ ସେ ବାଛନ୍ଦ ହୋଇଗଲା । ପରେ ଝିଅଟି ଅତ୍ମହତ୍ୟା କରି ହିନ୍ଦୁ ସମାଜର କୋପ ଦୃଷ୍ଟିରୁ ବଞ୍ଚି ଯାଇଥିଲା ବୋଲି ଜେଜେମାଆ କହୁଥିଲେ ।

ପତ୍ନୀଙ୍କ କଥା ଶୁଣି ସୀତାକାନ୍ତଙ୍କ ଗବେଷକ ଦୃଷ୍ଟି ହଠାତ୍ କୋମଳ ହୋଇ ଆସିଲା । ସ୍ୱର୍ଣ୍ଣଲତା ଯେଉଁ ସମୟରେ ବଞ୍ଚିଥିଲା ସେ ସମୟରେ ନାରୀର ସତୀତ୍ୱ ତା'ର ଚରିତ୍ରରେ ନୁହେଁ, ସମାଜର ଦୃଷ୍ଟି ମଧ୍ୟରେହିଁ ଆବଦ୍ଧ ଥିଲା । ନିମକମାହାଲି ସିରସ୍ତାଦାର ସ୍ୱାମୀ ଯଦି ଅକାରଣରେ ନିଜ ସ୍ତ୍ରୀକୁ ଅସତୀ ବୋଲି କୌଣସି କାରଣରୁ ଘୋଷଣା କରେ, ତା'ର ପ୍ରତିବାଦ କରିଥାଆନ୍ତା କିଏ ?

ସୀତାକାନ୍ତ ସୌଦାମିନୀଙ୍କ ମୁହଁକୁ ଚାହିଁଲେ । ସେ ବୁଝି ପାରିଲେ, ତାଙ୍କର ପତ୍ନୀ ତାଙ୍କ ଭଳି ବହୁତ ବହି ପଢ଼ି ନାହାନ୍ତି, କିନ୍ତୁ ସେ ଅଶିକ୍ଷିତା ନୁହନ୍ତି ।

ସେ ଯୁଗରେ ସତୀତ୍ୱ ଯେପରି ନାରୀର ଚରିତ୍ରରେ ନଥିଲା, ଏ ଯୁଗରେ ଶିକ୍ଷା କେବଳ ବହିର ପୃଷ୍ଠାରେ ନାହିଁ । ■

# ପାଦ୍ରି ସାହେବ

## ସାତକଡ଼ି ହୋତା

ଲୋକମାନେ ତାଙ୍କ ନାମ ଉଚ୍ଚାରଣ କରିପାରନ୍ତି ନାହିଁ ବୋଲି ତାଙ୍କୁ ପାଦ୍ରି ସାହେବ କହନ୍ତି । ବାରିପଦାର କାଥଲିକ୍ ଚର୍ଚ୍ଚରେ ସେ ପ୍ରଥମ ଯେଉଁଦିନ ଈଶ୍ୱରଙ୍କ ସମ୍ବନ୍ଧରେ ସହଧର୍ମୀମାନଙ୍କୁ ପ୍ରବଚନ ଦେଉଥିଲେ ସେଦିନ ସେ ଭାବିନଥିଲେ ଯେ, ଅଷ୍ଟ୍ରେଲିଆରୁ ଓଡ଼ିଶା ପରି ଏକ ଅନଗ୍ରସର ପ୍ରଦେଶକୁ ତାଙ୍କର ଆସିବା ନିଜ ପକ୍ଷରେ ଅନୁକୂଳ ନହେଲେ ବି ପ୍ରଭୁଙ୍କ ବାଣୀ ପ୍ରଚାର କରିବା ପାଇଁ ଓ ତାଙ୍କର ପତିତ ଆର୍ତ୍ତ ପୁତ୍ରମାନଙ୍କୁ ନର୍କରୁ ଉଦ୍ଧାର କରିବା ପାଇଁ ଏପରି ସୁବର୍ଣ୍ଣ ସୁଯୋଗ ଆଉ କେଉଁଠି ସହଜରେ ତାଙ୍କୁ ମିଳିବ ନାହିଁ । ଆଫ୍ରିକାରେ ଫାଦର ମାର୍ଟିନ୍‌ଙ୍କ ସହକର୍ମୀ ଭାବେ ସେ ପାଞ୍ଚବର୍ଷ କାର୍ଯ୍ୟ କରିଥିଲେ ଏବଂ ସେଠାରେ ଥିବାବେଳେ ତାଙ୍କର ବିଶ୍ୱାସ ଆହୁରି ଦୃଢ଼ ହୋଇଥିଲାଯେ, ପ୍ରଭୁ ଯୀଶୁ ଏଇ ପତିତ ଓ ଆର୍ତ୍ତମାନଙ୍କ ମଧ୍ୟରେ ରହିଛନ୍ତି । ସେଥିପାଇଁ ଫାଦର ମାର୍ଟିନ୍ ଯେଉଁଦିନ ତାଂକୁ ସ୍ୱାଧୀନ ଭାବେ କାର୍ଯ୍ୟ କରିବା ପାଇଁ ଯେକୌଣସି ଦେଶ ବାଛିନେବା ପାଇଁ କହିଲେ ଉଇଲିଅମ୍ ଷ୍ଟେନସ୍ ସେହିଦିନ ଭାରତର କୁଷ୍ଠରୋଗୀମାନଙ୍କ ସମ୍ବନ୍ଧରେ ଗୋଟିଏ ରଚନା ପଢ଼ିଥିଲେ ସମ୍ବାଦପତ୍ରରୁ । ଭାରତର ସର୍ବାଧିକ କୁଷ୍ଠରୋଗୀ ଅଛନ୍ତି ଓଡ଼ିଶାରେ । କିନ୍ତୁ କୁଷ୍ଠରୋଗୀ ପୂର୍ବଜନ୍ମ ଓ ଏ ଜନ୍ମର ପାପ ରୂପକ ବୋଲି ସେମାନଙ୍କୁ କୃତକର୍ମର ଶାସ୍ତି ଭୋଗ କରିବାକୁ ଛାଡ଼ି ଦିଆଯାଏ । ସମାଜ ସେମାନଙ୍କୁ ସମ୍ମାନ କରେନାହିଁ, କିମ୍ବା ଅନ୍ୟ ମଣିଷମାନେ ସେମାନଂକୁ ଶ୍ରଦ୍ଧା କରନ୍ତ ନାହିଁ । ସମାଜ ଦ୍ୱାରା ଉପେକ୍ଷିତ ଓ ଲୋକମାନଙ୍କ ଦ୍ୱାରା ଅବହେଳିତ ସେଇ କୁଷ୍ଠରୋଗୀମାନଙ୍କର ଏକମାତ୍ର ସମ୍ବଳ – ନିଜସ୍ୱ ଅଶ୍ରୁ ଓ ଦୀର୍ଘଶ୍ୱାସ । ସେଇ କାହାଣୀ ଉଇଲିଅମ୍ ଷ୍ଟେନ୍ସଙ୍କୁ ଏତେ ଅଭିଭୂତ କରିଥିଲା ଯେ, ସେ ଫାଦର୍ ମାର୍ଟିନଙ୍କ ସାନ୍ନିଧ୍ୟ ଛାଡ଼ି ପ୍ରଭୁ ଯୀଶୁଙ୍କ କାର୍ଯ୍ୟ କରିବା ପାଇଁ ଚାଲି ଆସିଥିଲେ ଭାରତବର୍ଷ । ବମ୍ବେରେ ବ୍ୟୋମଯାନରୁ ଓହ୍ଲାଇବା ପରେ ସେ କୋଣାର୍କ ଏକ୍ସପ୍ରେସରେ ଚାଲିଆସିଲେ ଭୁବନେଶ୍ୱର ଏବଂ ସେଠାରୁ ଗୋଟେ କାର୍ ଭଡ଼ା କରି ସନ୍ଧ୍ୟାବେଳେ ଆସି ପହଞ୍ଚିଲେ କୃଷ୍ଣଚନ୍ଦ୍ରପୁର କ୍ୟାଥଲିକ୍ ଚର୍ଚ୍ଚରେ ।

ଆଫ୍ରିକାରୁ ଆସିବା ବେଳେ ଫାଦର ପିଟର ତାଙ୍କୁ ଯାହା କହିଥିଲେ ତାହା ଅକ୍ଷରେ ଅକ୍ଷରେ ପାଳନ କରିବା ପାଇଁ ସଂକଳ୍ପ କରିଥିଲେ ଉଇଲିଅମ୍ ଷ୍ଟେନ୍ସ । ସମସ୍ତେ ଈଶ୍ୱରଙ୍କ

ପୁତ୍ର । ସେମାନଙ୍କ ପାଖରୁ ଆରମ୍ଭ ଏବଂ ସେମାନଙ୍କ ପାଖରେ ଶେଷ । ତେଣୁ ଚର୍ଚ୍ଚର ପ୍ରଥମ ପ୍ରାର୍ଥନା ସଭାରେ ସେ କହିଥିଲେ ଏଇ ପୃଥିବୀର ଶସ୍ୟ, ଫଳ, ଫୁଲ, ଜୀବଜନ୍ତୁ ସବୁରି ଉପରେ ।

ମୁଁ ବିଛଣାରୁ ଉଠି ବସିଲି । ମୋ ମୁଣ୍ଡ ପାଖ ଟେବୁଲ୍ ଉପରେ ଥିଲା ଥଣ୍ଡା ହୋଇଯାଇଥିବା ଗୋଟେ ଦୁଧ ଗ୍ଲାସ ଓ ଦୁଇଖଣ୍ଡି ବିସ୍କୁଟ୍ ।

ମୋ ନିଦ ଭାଙ୍ଗିବା ଦେଖି ବାରଣ୍ଡାରେ ଅପେକ୍ଷା କରୁଥିବା ଚୌକିଦାରଟି ପାଖକୁ ଆସିଲା । ସବୁକଥା ଜାଣିଥିବା ପରି ପଚାରିଲା ରାତିରେ ଭଲ ନିଦ ହେଲା କି ନାହିଁ ।

ମୁଁ ନୀରବରେ ମୁଣ୍ଡ ହଲାଇଲି, ଯାହାର ପ୍ରକୃତ ଅର୍ଥ ସେ ହୁଏତ ବୁଝି ପାରିଲା ନାହିଁ ।

ମୁହଁ ନଧୋଇ, ସେମିତି ବିଛଣାରେ ବସି, ମୁଁ ଦୁଧ ଗ୍ଲାସତକ ପିଇଲି । ତା'ପରେ ପାଞ୍ଚ ମିନିଟ୍ ଭିତରେ ପ୍ରସ୍ତୁତ ହୋଇ ଗାଡ଼ିରେ ବସିଲି ।

ସାମ୍ନାରେ ସେହି ଲମ୍ବା ପାହାଡ଼ି ରାସ୍ତା, ସେଇ ନିର୍ଜନ ସବୁଜିମା । ଚିକ୍ ଚିକ୍ ଖରାଧାସରେ ପହଁରୁଥିବା ମେଘ ମତେ ଯେମିତି ଅନୁସରଣ କରୁଥିଲେ ପୃଥିବୀର ସୀମା ଶେଷ ପର୍ଯ୍ୟନ୍ତ ।

କ'ଣ ମତେ କହିଥିଲା ସେ ଝିଅଟି କାଲି ରାତିରେ । ଲୁହଭିଜା ତା'ର ହାତଟି ମୋ ଦୁଇହାତ ଭିତରେ ସମର୍ପି ଦେଲାବେଳେ !

ମୁଁ ଏଠି କେତେଦିନ ଅପେକ୍ଷା କରିବି ଏକା ଏକା, କେତେ କାଳ ! ମତେ ତୁମ ସାଙ୍ଗରେ ନେଇ ଯାଅ । ସେ କହିଥିଲା ।

ମୋ ଗାଡ଼ି ଏବେ ଧୀରେ ଧୀରେ ଘାଟି ରାସ୍ତାରେ ଆହୁରି ଉପରକୁ ଉଠିବା ଆରମ୍ଭ କରିଥିଲା । କିଛି ଦୂର ଯିବା ପରେ ଗୋଟିଏ ଝରଣା ପଡ଼ିବ, ଉଚ୍ଚା ଉଚ୍ଚା ପାହାଡ଼ ଫାଙ୍କରୁ ସ୍ରୋତସ୍ୱିନୀଟିଏ ଝରି ଆସିଥିବ ଅନେକ ଦିନର ଅବରୁଦ୍ଧ ଇଚ୍ଛା ପରି ।

ଅବିକଳ ମୋ କଳ୍ପନାକୁ ସତ କରିଦେଇ ଝରଣାଟିଏ ଝାମ୍ପି ପଡ଼ିଥିଲା ବନାନୀ ଭିତରୁ । ତୁଳିରେ ଆଙ୍କିଦେଲା ପରି ମନୋରମ ସେହି ଦୃଶ୍ୟ ।

ମୁଁ ଗାଡ଼ି ଅଟାକାଇଲି ।

ସବୁଆଡ଼ ନିର୍ଜନ । ଏମିତି ନିଃଶବ୍ଦ ଯେମିତି ପତ୍ରଟିଏ ଖସି ପଡ଼ିଲେ ବି ଦୋହଲିଯିବ ଦ୍ୟାବାପୃଥିବୀର ସମନ୍ୱୟ । ଭାଙ୍ଗିଯିବ କେଉଁ ତପସ୍ୱିନୀର ଯୋଗ ନିଦ୍ରା ।

ମୁଁ ଗାଡ଼ି ଭିତରେ କିଛି ସମୟ ନୀରବରେ ବସି ରହିଲି ।

ଝିଅଟି କହିଥିଲା, ଝରଣା ପାଖେ ପହଞ୍ଚି ମୋ ନାଆଁ ଧରି ଦି'ଥର ଡାକିବ । ତୃତୀୟଥର ଡାକିବାକୁ ପଡ଼ିବ ନାହିଁ, ତା' ଆଗରୁ ମୁଁ ଆସି ପହଞ୍ଚିଯିବି ତୁମ ପାଖରେ । ଏଠୁ ତୁମେ ମତେ

ଉଦ୍ଧାର କଲାପରେ, ଯୁଆଡ଼େ ଚାହିଁବ ନେଇଯିବ । କିମ୍ବା ଛାଡ଼ିଦେଇଯିବ ଯେକୌଣସି ସ୍ଥାନରେ । ମତେ ଏଠି ଆଉ ମୋଟେ ଭଲ ଲାଗୁନାହିଁ । କେତେଦିନ ମୁଁ ଏଠି ରହିବି, କାହାର ଅପେକ୍ଷାରେ !

ମୁଁ ଚାରିଆଡ଼କୁ ଚାହିଁଲି । ଏଇ ନିଃଶବ୍ଦତାକୁ ଭଙ୍ଗକରି ମତେ ଡାକିବାକୁ ହେବ। ବଡ଼ ପାଟିରେ । କିନ୍ତୁ କାହା ନାମ ଧରି ? କ'ଣ ସେ ଝିଅଟିର ନାମ ।

ମୋର ତା' ମୁହଁ ମନେ ଅଛି, ତା' ହାତର ସ୍ପର୍ଶ ଏବେ ବି ମୋ ଦେହରେ ଜୀବନ୍ତ । କିନ୍ତୁ ତା'ର ନାମ କ'ଣ ? ମୋତେ ଜଣା ନାହିଁ । ସେ ମତେ ସେକଥା କହିନାହିଁ ।

ମୁଁ ଚୁପ୍‌ଚାପ୍ ବସି ରହିଲି ସେହି ଦିଗଭ୍ରଷ୍ଟ ନିର୍ଜନତା ଭିତରେ । ଆକାଶକୁ ଭେଦ କରି ଆହୁରି ଊର୍ଦ୍ଧ୍ୱରେ ଲୀନ ହୋଇଯାଇଥିବା ନିଃଶବ୍ଦତା ଭିତରେ ।

ପରବର୍ତ୍ତୀ କେତେଦିନ ମୋତେ ଆଚ୍ଛନ୍ନ କରି ରଖିଥିଲା ସେହି ଝିଅଟିର ସ୍ମୃତି । ଦିନର ନିର୍ଜନ ମୁହୂର୍ତ୍ତରେ, ରାତ୍ରିର ସ୍ତବ୍‌ଧ ଅନ୍ଧାର ଭିତରେ ।

ସେଦିନ ରାତିରେ ମୁଁ ଅଶରୀରି ଏକ ନାରୀକୁ ଦେଖିଥିଲି କି ନାହିଁ, ଅସ୍ଥିର ବିନିଦ୍ର ଯାମିନୀ ତା' ସାନ୍ନିଧ୍ୟରେ ବିତାଇଥିଲି କି ନାହିଁ, ମୋର ତା' ପ୍ରତି କିଛି ପ୍ରତିଶ୍ରୁତି ଥିଲା କି ନାହିଁ, ତାହା ଏବେ ମୋ ପାଇଁ ଅବାନ୍ତର । ସ୍ଥାବର ଓ ଜଙ୍ଗମକୁ ଅତିକ୍ରମ କରି, ପ୍ରେତ ଓ ପିଶାଚର ଚରାଭୂଇଁ ଏ ପୃଥିବୀରେ ରହିଛି କି ନାହିଁ ସେ ପ୍ରଶ୍ନ ବି ମୋ ପାଇଁ ଅବାନ୍ତର । ହୁଏତ ଏ ପୃଥିବୀରେ ଭୂତ ପ୍ରେତ ପିଶାଚ କେହି ନାହାନ୍ତି । ହୁଏତ ମୋର ତିନୋଟିଯାକ ଅଭିଜ୍ଞତାର କାହାଣୀ ମୋ ଦୁର୍ବଳ ନିର୍ବୋଧ ମନର ପ୍ରତିଛବି ।

କିନ୍ତୁ ବେଳେବେଳେ ମୁଁ ଯେବେ ଭାବିବସେ, ମୋ ଚାରିପାଖେ ବହିଯାଉଛି ଯେଉଁ ପବନ, ସେଥିରେ ପ୍ରଲିପ୍ତ ହୋଇ ରହିଛି ଅସଂଖ୍ୟ ବେଦନାକ୍ତ ହୃଦୟର ଦୀର୍ଘଶ୍ୱାସ, ଆଶା ଓ ନିରାଶା,ସ୍ୱପ୍ନ ଓ ଲୁହରେ ଭାରକ୍ରାନ୍ତ ହୋଇ ରହିଛି ଏ ପବନର କୋଟି କୋଟି ଅଣୁ ପରମାଣୁ ମନ୍ୱନ୍ତରର ଆଦ୍ୟ ଉନ୍ମେଷରୁ, ସେତେବେଳେ ମୋତେ ଛଟପଟ ଲାଗେ । ମୋତେ ଲାଗେ, ଏ ପବନ ଉପରେ ମୋର ଅଧିକାର ନାହିଁ, ଅନ୍ୟର ଦୀର୍ଘଶ୍ୱାସରୁ ଉଦ୍‌ବୃତ୍ତ ଅମ୍ଳଜାନ ମୋ ଧମନୀ ଭିତରକୁ ଘେନି ଆସିବା ମୋ ପକ୍ଷରେ ଅନୁଚିତ, ଏକ ତସ୍କରର ଅପରାଧ ପରି ଜଘନ୍ୟ ଏ ବଞ୍ଚନା ।

ମଣିଷ ଶ୍ରେଷ୍ଠ ପ୍ରାଣୀ । ତାରି ପ୍ରାର୍ଥନା ଶୁଣି ଯାହାକିଛି ପ୍ରୟୋଜନ ଯୋଗାଇଦେବେ ଭଗବାନ । ଈଶ୍ୱର ସର୍ବମୟ କର୍ତ୍ତା । ତାଙ୍କରି ପାଖରେ ଶରଣ ପଶ, ସେ ତୁମକୁ ସବୁ ଦୁଃଖ ଶୋକରୁ ମୁକ୍ତି କରିବେ ।

ପାଦ୍ରି ସାହେବଙ୍କର ବକ୍ତୃତା ଶୁଣି ଧୀରୁ ପାଣ, ଯଦୁ ଚମାର, ଘନ ସାନ୍ତାଳ ସମସ୍ତେ ସମସ୍ୱରରେ କହିଲେ – ହେ ଈଶ୍ୱର, ଆମକୁ ରକ୍ଷା କର । ଆମେ କ୍ଷୁଧାର୍ତ୍ତ, ଆମକୁ ଖାଦ୍ୟଦିଅ,

ରୋଗରୁ ମୁକ୍ତ କର, ଏଇ ପୃଥିବୀର ସମସ୍ତ ସମ୍ପଦ ଭୋଗ କରିବା ପାଇଁ ଆମକୁ ଶକ୍ତି ଦିଅ ।

ସେମାନଙ୍କୁ ପାଖରେ ବସାଇଲେ ପାଦ୍ରି ସାହେବ । ଦେହ ଢ଼ାଙ୍କିବା ପାଇଁ ଲୁଗା ଦେଲେ, ରୋଗର ଉପଶମ ପାଇଁ ଔଷଧ, ଉପାସନା କରିବା ପାଇଁ ଦେଲେ ସଚେତନତା । କୁଷ୍ଠ ରୋଗୀର ଘା ସଫା କରି ମଲମ ଲଗାଇ ବ୍ୟାଣ୍ଡେଜ୍ କଲେ ପାଦ୍ରି ସାହେବ । ସେମାନଙ୍କ ସହିତ ଏକତ୍ର ବସି ପ୍ରାର୍ଥନା କଲେ, ଭୋଜନ କଲେ, ଭଜନ ଗାଇଲେ ।

ଗାଁ ମାନଙ୍କରେ ଚହଳ ପଡ଼ିଗଲା । ଦେବଦୂତ ଅବତରଣ କରିଛନ୍ତି ଦୁଃଖୀ, ଅସ୍ପୃଶ୍ୟ ଓ ଆର୍ତ୍ତର ଦୁଃଖ ନାଶ କରିବା ପାଇଁ ।

ମୁହଁରୁ ମୁହଁକୁ ବ୍ୟାପିଗଲା ଏ କଥା । ଅବିଶ୍ୱାସୀମାନଙ୍କୁ ଆଖିରେ ଦେଖିଥିବା ଲୋକମାନେ ଅଙ୍ଗେନିଭା କାହାଣୀ କହିଲେ । ରୋଗମୁକ୍ତ କହ୍ନେଇ କହିଲା ପୁରାଣରୁ ଶୁଣିଥିବା କଥା । ଅପକର୍ମ ପାଇଁ ପୁତ୍ର ଶାମ୍ବଙ୍କୁ ଅଭିଶାପ ଦେଇଥିଲେ ଶ୍ରୀକୃଷ୍ଣ ଭଗବାନ । ସେଇ ଅଭିଶାପରୁ ସେ ହେଲେ କୁଷ୍ଠ ରୋଗୀ । କିନ୍ତୁ ସେଥିରୁ ଆରୋଗ୍ୟ ଲାଭର ମାର୍ଗ ମଧ୍ୟ ସେ କହିଦେଇଥିଲେ । ପୂର୍ବ ଉପକୂଳର ଅର୍କ କ୍ଷେତ୍ରରେ ସୂର୍ଯ୍ୟ ପୂଜା କରିବାକୁ ଦ୍ୱାରକାରୁ କୋଣାର୍କ ତିନିହଜାର ମାଇଲ ଦୀର୍ଘ ବିପଦ ସଙ୍କୁଳ ପଥ ଅତିକ୍ରମ କରିବା କଣ ସହଜ ? ତଥାପି ଭଗବାନ ଶ୍ରୀକୃଷ୍ଣଙ୍କ ଆଶୀର୍ବାଦ ଥିଲା ବୋଲି ଶାମ୍ବ ଦୀର୍ଘପଥ ଅତିକ୍ରମ କରି ଅର୍କକ୍ଷେତ୍ରରେ ପହଞ୍ଚିଲେ ଏବଂ ସୂର୍ଯ୍ୟଙ୍କୁ ଉପାସନା କରି ରୋଗମୁକ୍ତ ହେଲେ ।

କିନ୍ତୁ କହ୍ନେଇର କୁଷ୍ଠ ରୋଗ ପାଦ୍ରି ସାହେବଙ୍କ ସେବା ଯତ୍ନ ଦ୍ୱାରା ୬ ମାସରେ ଭଲ ହୋଇଗଲା ।

ବାରମ୍ବାର ମ୍ୟାଲେରିଆ ଭୋଗି ଶୋତା ଦିଶୁଥିବା ଖଡ଼ିଆଳର ମୁକୁନ୍ଦ ବେହେରା ରୋଗମୁକ୍ତ ହେଲା ପାଦ୍ରି ସାହେବଙ୍କ ଔଷଧ ଖାଇବା ପରେ । ଅଖାଦ୍ୟ ଖାଇ ପେଟରୋଗ ଭୋଗୁଥିବା ଯଦୁ ସିଂର ଝିଅ ପୁଷ୍ଟିକର ଖାଦ୍ୟ ଖାଇବାପରେ ବେଶ୍ ଡଉଲ୍‌ଡାଉଲ ଦିଶିଲା ।

ସମସ୍ତେ ପାଦ୍ରି ସାହେବଙ୍କୁ ଧନ୍ୟ ଧନ୍ୟ କଲେ । ପାଦ୍ରି ସାହେବ କେତେବେଳେ ସାଇକେଲରେ ତ ଆଉ କେତେବେଳେ ପାଦରେ ଚାଲି ସହର ଓ ସଭ୍ୟତା ଠାରୁ ବିଚ୍ଛିନ୍ନ ହୋଇ ବଣଜଙ୍ଗଲ ଭିତରେ ଥିବା ଗାଁ ମାନଙ୍କୁ ଗଲେ । ସ୍ଥାନୀୟ ଲୋକମାନଙ୍କ ସହିତ ବସିଲେ, ଖାଇଲେ, ଆଳାପ ଆଲୋଚନା କଲେ ଏବଂ ଉତ୍ସବରେ ସେମାନଙ୍କ ସହିତ ନାଚିଲେ ।

ଦିନେ ପାଦ୍ରି ସାହେବ ଯଦୁ ସିଂ ଓ ଅନ୍ୟମାନଙ୍କୁ କହିଲେ ମୁଁ କିଛି କରିନି, ସବୁ ପ୍ରଭୁ ଯୀଶୁଙ୍କ କରୁଣା । ତୁମେ ତାଙ୍କୁ ବିଶ୍ୱାସ କର, ମୁକ୍ତି ପାଇବ ।

କିଏ ସେଇ କରୁଣାମୟ ପ୍ରଭୁ ? ପଚାରିଲା ଯଦୁ ସିଂ । ଦେବା ପାଇଁ ନିଜେ କ୍ରୁଶବିଦ୍ଧ ହୋଇଛନ୍ତି । ଏଇ କ୍ରସ୍ ତାଙ୍କ ତ୍ୟାଗ ଓ ମହିମାର ପ୍ରତୀକ । ତୁମେ ସମସ୍ତେ କ୍ରସ୍ ବେକରେ

ଝୁଲାଇଲେ ଦୁଃଖ କ୍ଷୟ ହେବ ।

ସେମାନଙ୍କୁ ବିଶ୍ୱାସକୁ ନେଇ ପାଦ୍ରି ସାହେବ ଆହୁରି ବି କହିଲେ - କାଠ, ପାଷାଣ, ପିତଳ ମୂର୍ତ୍ତିକୁ ପୂଜା କରି ତମେମାନେ ପରିତ୍ରଣ ପାଇବ ନାହିଁ । ପ୍ରଭୁ ଯୀଶୁଙ୍କୁ ବିଶ୍ୱାସ କର, ତାଙ୍କ ପାଦତଳେ ନିଜକୁ ସମର୍ପଣ କର, ସେ ତୁମ ସମସ୍ତଙ୍କୁ ମୁକ୍ତି ଦେବେ ।

ସେମାନେ ପାଦ୍ରି ସାହେବଙ୍କ କଥା ଶୁଣିଲେ, କିନ୍ତୁ ସହସା କୌଣସି ନିଷ୍ପତ୍ତି ନେଇପାରିଲେ ନାହିଁ ।

କେବଳ କୁସୁମବନ୍ଧୀରେ ପାଦ୍ରି ସାହେବଙ୍କ କଥା ରହିଲା ନାହିଁ । ଅସ୍ତିଆ, ହାତିଶୋଳ, ବାଙ୍ଗିରୀପୋଷି, ଖଡ଼ିଆଶୋଳ ସବୁ ଆଖପାଖ ଗାଁରେ ତାଙ୍କ କଥା ଲୋକମାନଙ୍କୁ ପାଖରେ ପହଞ୍ଚିଲା । ତୁଣ୍ଡ ବାଇଦ ସହସ୍ର କୋଶ । ପ୍ରଭୁ ଯୀଶୁଙ୍କୁ ଗ୍ରହଣ କଲେ ସେ ବିଶ୍ୱସ୍ତମାନଙ୍କୁ ପ୍ରେମ କରିବେ ଓ ପାପତାପରୁ ପରିତ୍ରାଣ ମିଳିବ । ସବୁ ମଣିଷ ତାଙ୍କର ସନ୍ତାନ । ସେ ପରମ କରୁଣାମୟ ପରମେଶ୍ୱର ।

ନାରଣ ଦେହୁରୀ ମନକୁ କଥାଟା ପାଇଲା ନାହିଁ । ସେ ଠାକୁରାଣୀ ମନ୍ଦିରକୁ ଯିବା ବାଟରେ ଯାହାକୁ ଦେଖିଲା ତାକୁ କହିଲା - ନିଜ ଧର୍ମ ଛାଡ଼ି ଅନ୍ୟ ଧର୍ମକୁ ଯିବା ମହାପାପ । ଯିଏ ଏ କାମ କରିବ ସେ ଅହି ନର୍କରେ ପଡ଼ିବ । ଯମ ତାକୁ ଛାଡ଼ିବ ନାହିଁ ।

ସଙ୍କଟରେ ପଡ଼ିଗଲେ ଧର୍ମ ବଦଳାଇବା ପାଇଁ ମନସ୍ଥ କରିଥିବା ଲୋକମାନେ ।

ନାରଣ ଦେହୁରୀ ଯାଇ ବୈଶ୍ୱାନର ପାଣିଗ୍ରାହୀଙ୍କୁ ଏଇ ଖବର ଦେଇ ଆସିଲା । ବ୍ରାହ୍ମଣ ସାହି, କରଣ ସାହିରେ ଚାହୁଁ ଚାହୁଁ ବ୍ୟାପିଗଲା ଗୁଜବ । ପ୍ରଭୁ ଯୀଶୁ ଯେଉଁମାନଙ୍କୁ ଦୟା କରନ୍ତି ସେମାନେ ସୁଖରେ ରହନ୍ତି। କୁସୁମବନ୍ଧୀ ଗାଁରେ ପାଦ୍ରି ସାହେବ ଖୋଲିଥିବା ବିଦ୍ୟାଳୟରେ ପ୍ରତିଦିନ ପିଲାମାନେ କ୍ରୁଶବିଦ୍ଧ ପ୍ରଭୁଙ୍କୁ ପ୍ରାର୍ଥନା କରନ୍ତି ; ପ୍ରଭୁ ଆମମାନଙ୍କୁ ପରିତ୍ରାଣ କର, ଆମକୁ ଖାଦ୍ୟ ବସ୍ତ୍ର, ବାସଗୃହ ଦିଅ । ଆମକୁ ଜରାମୁକ୍ତ କର ।

ବୈଶ୍ୱାନର ଦଳେ ଟୋକାଙ୍କୁ ସାଙ୍ଗରେ ନେଇ ପହଞ୍ଚିଲେ କୁସୁମବନ୍ଧୀ ଗ୍ରାମରେ । ପ୍ରଥମେ ଗୋବର ପାଣି ଏବଂ ତା'ପରେ ଗଙ୍ଗାପାଣି ଛିଞ୍ଚି ସ୍ଥାନ ପବିତ୍ର କଲେ। ମ୍ଳେଚ୍ଛମାନଙ୍କ ସଂଖ୍ୟା ବଢୁଥିବାରୁ ରୋଗଯନ୍ତ୍ରଣା, ଦୁଃଖ ଶୋକ ବଢୁଛି । ବିଶ୍ୱାସ ବଢୁଥିବାରୁ ପାପର ଭାର ମଧ୍ୟ ବଢୁଛି । ଆଉ ନିଜ ଧର୍ମ ଛାଡ଼ି ଯେଉଁମାନେ ପରଧର୍ମରେ ଦୀକ୍ଷିତ ହେବେ ସେମାନଙ୍କର ମୁକ୍ତି ନାହିଁ, ସାତ ଜନ୍ମ ଧରି ଅହିନର୍କରେ ବାସ କରିବା ହିଁ ସାର ହେବ ।

ବୈଶ୍ୱାନର ବାବୁ ଗୀତାର ଶ୍ଳୋକ ଉଦ୍ଧାର କରି କହିଲେ ସ୍ୱୟଂ ଭଗବାନ ଶ୍ରୀକୃଷ୍ଣ ମୁଖ ନିଃସୃତ ବାଣୀ । ସ୍ୱଧର୍ମେ ନିଧନ ଶ୍ରେୟଃ ପରଧର୍ମ ଭୟାବହ । ଏଇ କୃତ କର୍ମର ଫଳ ଭୋଗିବାକୁ ହେବ ସମସ୍ତଙ୍କୁ । ମଡ଼କ, ମହାମାରୀ, ଅଗ୍ନିଭୟ, ଅପମୃତ୍ୟୁ ଲାଗିରହିବ । ଯେଉଁମାନେ ଧର୍ମ ବଦଳାଇବାକୁ ଚାହାନ୍ତି ସେମାନଙ୍କର ଏଇ ଭୟଙ୍କର ନିଷ୍ପତ୍ତିର

ଫଳ ଗ୍ରାମର ସମସ୍ତଙ୍କୁ ଭୋଗ କରିବାକୁ ପଡ଼ିବ ।

ନାରଣ ଦେହୁରୀ କହିଲା - କେତେଜଣଙ୍କ ପାପର ଫଳ ଅନ୍ୟମାନେ କାହିଁକି ଭୋଗିବେ ? ଆଜି ସନ୍ଧ୍ୟାବେଳେ ଠାକୁରାଣୀଙ୍କ ମନ୍ଦିର ସାମ୍ନାରେ ସଭା ବସୁ ଏମାନଙ୍କର ବିଚାର ହେଉ ।

ବୈଶ୍ୱାନର ଓ ଅନ୍ୟ ସମସ୍ତେ ସେହି ପ୍ରସ୍ତାବ ଗ୍ରହଣ କରିନେଲେ ।

ସନ୍ଧ୍ୟାବେଳେ ଠାକୁରାଣୀ ମନ୍ଦିର ଆଗରେ ଗାଁର ପଞ୍ଚାୟତ ବସିଲା । ସମସ୍ତଙ୍କ ଘରୁ ମୁରବୀମାନେ ଉପସ୍ଥିତ ହେଲେ । ପ୍ରଥମେ ପାଣିଗ୍ରାହୀ ବିଷୟଟିର ଗୁରୁତ୍ୱ ସମ୍ପର୍କରେ କହିସାରି ପାଦ୍ରି ସାହେବ ଗାଁକୁ ବାରମ୍ବାର ଆସିବା ପରେ କିପରି ନିଜ ଧର୍ମ ଛାଡ଼ି ଖ୍ରୀଷ୍ଟଧର୍ମ ଗ୍ରହଣ କରିବାପାଇଁ ପ୍ରଚାର ଚାଲିଛି, ସେଇ ବିଷୟ କହିଲେ । ନାରଣ ଦେହୁରୀ ମଧ୍ଯ ଦେଖିଥିବା ଶୁଣିଥିବା କଥା କହିଲା । ସେ କାନ୍ଦି ପକାଇ କହିଲା ଯେ, ମା' ଠାକୁରାଣୀଙ୍କ ଉପରେ ସନ୍ଦେହ କରୁଛି ସାହେବ । ମା' ଅସନ୍ତୁଷ୍ଟ ହେଲେ ଯେ ଗାଁର ହାଡ଼ଫୁଟି, ମିଳିମିଳା, ଝାଡ଼ାବାନ୍ତି ବ୍ୟାପେ ଏହା କୁଆଡ଼େ ମିଛ, କୁସଂସ୍କାର ବୋଲି ସାହେବ କହିଥିବା ଶୁଣା କଥା ଗୋଟି ଗୋଟି କରି କହିଗଲା । ପାଣିଗ୍ରାହୀ ହୁଙ୍କାର ଦେଇ କହିଲା ଯେ ଝାଡ଼ାବାନ୍ତି ହେଲେ ବା ମିଳିମିଳା କି ହାଡ଼ଫୁଟି ହେଲେ ଔଷଧ ଖାଇବା ମହାପାପ । ଦେବୀ ଏଥିରେ ରୁଷ୍ଟ ହୁଅନ୍ତି । ଯିଏ ଯାହାର ଭାଗ୍ୟ ନେଇ ଜନ୍ମ ହୁଅନ୍ତି । ଦୁଃଖ ସହିବା, ରୋଗରେ ପଡ଼ିବା, ଗରିବ ହେବା ସବୁ କର୍ମଫଳ । ପ୍ରାରବ୍ଧ ନକଟିବା ପର୍ଯ୍ୟନ୍ତ ଏସବୁ ଭୋଗ କରିବାକୁ ହେବ । ଗାଁରେ ବିଧର୍ମୀ ସାହେବ ଠାକୁରାଣୀଙ୍କୁ ଅପମାନ କଲାଭଳି କଥା କହିଥିବାରୁ ଏହାର ପ୍ରାୟଶ୍ଚିତ ଦରକାର । ମ୍ଳେଚ୍ଛ ସଂହାର ଭଗବାନ କରିବେ । କିନ୍ତୁ ତା' ଆଗରୁ ଏହାର ପ୍ରାୟଶ୍ଚିତ୍ କରିବାକୁ ପଡ଼ିବ । ଯଦୁ ସିଂ, କହ୍ନେଇ ଦଳେଇ, ମୁକୁନ୍ଦ ବେହେରାଙ୍କୁ ଗୋଟିଏ ଗୋଟିଏ କଳା ବୋଦା, ଜଣପିଛା ଦଶ ସେର ଚାଉଳ ଓ ପଚିଶ ଟଙ୍କା କରି ଜୋରିମନା କରାଗଲା ଏବଂ ଗାଁ ପଞ୍ଚାୟତର ଆଦେଶ ଅମାନ୍ୟ କରି ଜୋରିମନା ନ଼ଦେବା ପାଇଁ ନିଷ୍ପତ୍ତି ନେଇଥିବାରୁ ଧରୁ ପାଣ, ଘନ ସାନ୍ତାଳ, ଯଦୁ ଚମାରଙ୍କୁ ନିଆଁପାଣି ବାସନ୍ଦ କରାଗଲା । ଏଥିରେ ମଧ୍ଯ ଯଦି ସେମାନ ପରିବର୍ତ୍ତନ କରି ନିଜ ଧର୍ମରେ ରହିବା ପାଇଁ ପ୍ରତିଜ୍ଞା ନକରନ୍ତି ତେବେ ସମସ୍ତ ବିଧର୍ମୀଙ୍କୁ ଗାଁରୁ ବାହାର କରିଦେବା ପାଇଁ ପଞ୍ଚାୟତ ନିଷ୍ପତ୍ତି ନେଲା ।

ସଭା ଶେଷ ହେଲା, କିନ୍ତୁ ଗାଁ ଦୁଇ ଭାଗରେ ବିଭକ୍ତ ହୋଇଗଲା । ଗୋଟିଏ ପଟେ ପାଦ୍ରି ସାହେବଙ୍କ କଥା ଶୁଣି ଖ୍ରୀଷ୍ଟଧର୍ମ ଗ୍ରହଣ କରିବା ପାଇଁ ଯେଉଁମାନେ ରାଜି ହୋଇଥିଲେ ସେମାନେ ଏବଂ ସେମାନଙ୍କ ବିରୋଧରେ ଆଉ ସମସ୍ତେ । ଗାଁ ପଞ୍ଚାୟତର ଆଦେଶ ଏହା ପୂର୍ବରୁ ଆଉ କେତେ କେହି ଅମାନ୍ୟ କରି ନଥିଲେ କିମ୍ବା ପାପର ପ୍ରାୟଶ୍ଚିତ୍ତ

କରିବା ପାଇଁ ମନା କରିନଥିଲେ । ଯଦୁ ସିଂ, କହ୍ନେଇ ଦଳେଇ, ମୁକୁନ୍ଦ ବେହେରା ଛୋରିମନା ଦେଇ ଜାତିରେ ରହିବା ପାଇଁ ନିଷ୍ପତ୍ତି କଲେ । ହାଟଦିନ ପୁଣି ଯେତେବେଳେ ପାଦ୍ରି ସାହେବ ସେହି ଅଞ୍ଚଳକୁ ଆସି ସେମାନଙ୍କ ଭଲମନ୍ଦ ବୁଝିଲେ ସେତେବେଳେ ସେମାନଙ୍କ ମୁହଁ ଉପରେ ରାଶି ରାଶି ଭୟ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ତା' ପରେ ସେମାନଙ୍କୁ ଭରସା ଦେବା ପାଇଁ କହିଲେ - ତୁମମାନଙ୍କ ଇଚ୍ଛା ବିରୋଧରେ ମୁଁ କିଛି କହିବି ନାହିଁ । ତୁମେ ଧର୍ମ ଗ୍ରହଣ କର ବା ନକର ପ୍ରଭୁ ଯୀଶୁ ତୁମ୍ଭମାନଙ୍କୁ ପରିତ୍ରାଣ କରିବେ । ତାଙ୍କର କରୁଣାର ଅନ୍ତ ନାହିଁ । ସେ ସବୁ ନୀଚତା, କ୍ଷୁଦ୍ରତା, ଅନ୍ଧବିଶ୍ୱାସର ଊର୍ଦ୍ଧ୍ୱରେ । ବରଂ ଯେଉଁମାନେ ତାଙ୍କୁ ପ୍ରେମ କରିବେ, ତାଙ୍କ ଆଦେଶ ମାନିବା ପାଇଁ ସୋମବାର ଦିନ ତୁବନ ଉତ୍ସବରେ ଯୋଗଦେବେ ସେମାନଙ୍କୁ ପ୍ରଭୁ ମୁକ୍ତି ଦେବେ । ସେମାନଙ୍କୁ ସଂସାର ଜଞ୍ଜାଳରୁ ଉଦ୍ଧାର କରିବା ପାଇଁ ଅନୁଷ୍ଠାନ ପକ୍ଷରୁ ସବୁ ପ୍ରକାର ସାହାଯ୍ୟ ଦିଆଯିବ । ସରକାରଙ୍କୁ କହି ଚାକିରି ଦିଆଯିବ ।

ବୈଶ୍ୱାନର, ନାରଣ ଦେହୁରୀ ଓ ଅନ୍ୟମାନଙ୍କ ଧମକ ଚମକ ସତ୍ତ୍ୱେ ଗାଁ ମୁଣ୍ଡିଆ ଉପରେ ତୁବନ ଉତ୍ସବ ପାଳନ କରିବା ପାଇଁ ନିଷ୍ପତ୍ତି ହେଲା । କାଳେ ଅଶାନ୍ତି ଉପୁଜିପାରେ ସେଥିପାଇଁ ପାଦ୍ରି ସାହେବ ଥାନାବାବୁଙ୍କୁ ଜଣାଇଦେଲେ । ଥାନାବାବୁ କିନ୍ତୁ ତାଙ୍କ କଥାକୁ ଗୁରୁତ୍ୱ ନଦେଇ କହିଲେ- ଆପଣ ଚିନ୍ତା କରନ୍ତୁ ନାହିଁ । ଧର୍ମ ହିଁ ଆପଣଙ୍କୁ ରକ୍ଷା କରିବ ।

ସୋମବାର ଦିନ ତୁବନ ଉତ୍ସବ ମୁଣ୍ଡିଆ ଉପରେ କରିବା ସକାଶେ ଆୟୋଜନ ଚାଲିଲା । ଗୋଟେ ଚାଳିଆ ମଧ୍ୟ ତିଆରି ହେଲା । ପାଦ୍ରି ସାହେବ ନୂଆ ଲୁଗା, ଔଷଧ, ବହି ସିଲଟ ଓ ଅନ୍ୟାନ୍ୟ ସାମଗ୍ରୀ ନେଇ ରବିବାର ସନ୍ଧ୍ୟାରେ ପହଞ୍ଚିବେ ବୋଲି ଖବର ପହଞ୍ଚିଲା । ମୁଣ୍ଡିଆ ଉପରେ ପଥର ଦିହରେ ଗୋଟିଏ ବଡ଼ କ୍ରସ୍ ଚିହ୍ନ ବ୍ୟବସ୍ଥା ହେଲା । ସେଇ ଚାଳିଆକୁ ସୋମବାର ଠାରୁ ଗୀର୍ଜା ଓ ପ୍ରାର୍ଥନା ଗୃହ ଭାବେ ବ୍ୟବହାର କରିବା ପାଇଁ ସବୁ ବ୍ୟବସ୍ଥା ପାଦ୍ରି ସାହେବଙ୍କ ପକ୍ଷରୁ କରାଗଲା ।

କିନ୍ତୁ ରାତି ରାତି ଯେ ଗାଁର ଲୋକମାନେ ଦୁଇଟି ଶିବିରରେ ବିଭକ୍ତ ହୋଇଗଲେ ଏହା ସମସ୍ତେ ଜାଣୁଥିଲେ ବି କେହି ଏହି ଶତ୍ରୁତାର ବିରୋଧ କଲେ ନାହିଁ । ଯୁଗ ଯୁଗ ଧରି ଯେଉଁ ରୀତି, ପ୍ରଥା, ପରମ୍ପରା ଚଳି ଆସିଥିଲା ତାହା ବିଧର୍ମୀର ଆକ୍ରମଣରୁ ନଷ୍ଟ ହୋଇଛି ବୋଲି ପ୍ରଚାର ଚାଲିଲା । ବୈଶ୍ୱାନର, ନାରଣ ଦେହୁରୀ, ନବ ପ୍ରଧାନ ଘର ଘର ବୁଲି ଲୋକମାନଙ୍କୁ ଚେତାବନୀ ଶୁଣାଇ ଆସିଲେ । ଧର୍ମରକ୍ଷା କରିବା ପାଇଁ ଜୀବନ ଦେବା ପାଇଁ କେହି କେହି ପଣ କଲେ ଏବଂ ସାମାଜିକ ବାସନ୍ଦ ହୋଇଥିବା ଲୋକମାନଙ୍କୁ ଗାଁ ଗୋହିରୀ ବାଟଦେଇ ଚାଲିବା ପାଇଁ ନିଷିଦ୍ଧ ହେଲା । ପ୍ରାୟଶ୍ଚିତ୍ତ କରିବା ପାଇଁ ଆଦାୟ କରାଯାଇଥିବା ବୋଦା, ଚାଉଳ ଓ ଅନ୍ୟାନ୍ୟ ସାମଗ୍ରୀ ଏକତ୍ର କରି ରବିବାର ରାତିରେ

ଭୋଜି କରିବା ପାଇଁ ବ୍ୟବସ୍ଥା ହେଲା । ଭାତ ଓ ମାଉଁସ ଝୋଳ ଖାଇବାକୁ ମିଳିବ ଏବଂ ତା' ସହିତ ହାଣ୍ଡିଆ ବି ମାଗଣାରେ ମିଳିବ ଜାଣି ଗାଁ ଦାଣ୍ଡ ଦୁଲୁକିଲା ।

ହାଣ୍ଡିଆ ପିଇ, ଭାତ ଓ ମାଉଁସ ଖାଇସାରି ସମସ୍ତେ ଘରକୁ ଅଧରାତିରେ ଫେରିଗଲେ ସିନା ନବ ପଧାନ, ନାରଣ ଦେହୁରୀ ଓ ବୈଶ୍ୱାନର ରାତିରେ ଘନ ଅନ୍ଧାରକୁ ଖାତିର ନକରି ଆଗେଇ ଚାଲିଲେ । ସେମାନଙ୍କୁ ସାହାଯ୍ୟ କରିବା ପାଇଁ ଦଳେ ଟୋକା ମୁଣ୍ଡିଆ ଉପରକୁ ଆଗରୁ ଯାଇ ଅପେକ୍ଷାର କରୁଥିଲେ । ମୁଣ୍ଡିଆ ଉପରେ ତିଆରି କରାଯାଇଥିବା ନୂଆ ଚାଳିଆରେ ବିଶ୍ରାମ କରୁଥିଲେ ପାଦ୍ରି ସାହେବ । ତାଙ୍କ ସହିତ ଥିଲା କିଶୋର ଓ ତା'ର ପାଠପଢୁଆ ଭାର୍ଯ୍ୟା ମେଘବତୀ ।

ଗରମ ପଡ଼ିଥିଲା, ପବନ ନଥିଲା । ଖଟ ଉପର ଏପଟ ସେପଟ ହେଉଥିଲେ ପାଦ୍ରି ସାହେବ । ଆଫ୍ରିକାର ଅରଣ୍ୟାଞ୍ଚଳର ଅନୁଭୂତି ଅଛି ତାଙ୍କର । ପ୍ରତିକୂଳତା ବିରୋଧରେ ଲଢ଼ିବା ପାଇଁ ଶପଥ ନେଇଛନ୍ତି ସେ । ଭାରତରେ ପହଞ୍ଚିବା ପରେ ଓଡ଼ିଶା ପରି ଏକ ଅନୁନ୍ନତ ଅଞ୍ଚଳର ଆଦିବାସୀ ଓ ପଛୁଆବର୍ଗଙ୍କର ସେବା କରିବା ପାଇଁ ତାଙ୍କୁ ଯେ ସହଜରେ ଗୋଟିଏ ଭଲ ସୁଯୋଗ ମିଳିଯିବ ଏହା ଭାବିନଥିଲେ ସେ । ଦୁଇବର୍ଷ ମଧ୍ୟରେ ସେ ଏଇ ଅଞ୍ଚଳକୁ ଏବଂ ଏହାର ନିରଳସ, ସରଳ ଲୋକମାନଙ୍କୁ ଭଲ ପାଇଛନ୍ତି । ଏହା ହେଉଛି ତାଙ୍କର ସବୁଠାରୁ ବଡ଼ ସଫଳତା ।

ଧର୍ମ ପ୍ରଚାର କରିବା ପାଇଁ ଆସିନଥିଲେ ପାଦ୍ରି ସାହେବ । ଆସିଥିଲେ ସଭ୍ୟତାର ବହୁ ଦୂରରେ ଅନ୍ଧକାର ଓ ଅଜ୍ଞତା ମଧ୍ୟରେ କୁସଂସ୍କାରରେ ବୁଡ଼ି ରହିଥିବା ଲୋକମାନଙ୍କର ସେବା କରିବା ପାଇଁ । ସେବାରୁ ଆରମ୍ଭ କରିଥିଲେ ସେ, କିନ୍ତୁ ଶିକ୍ଷା ପ୍ରସାର ନହେଲେ ଯେ ଅଜ୍ଞତା ଦୂର ହେବନାହିଁ କି ସଚେତନତା ବଢ଼ିବ ନାହିଁ ଏହି ଉପଲବ୍ଧି ତ ଆଫ୍ରିକାରୁ ନେଇ ଆସିଛନ୍ତି ସେ । ସେଇଥିପାଇଁ ସେ ବିଦ୍ୟାଳୟ ଖୋଲିଲେ, ଲୋକମାନଙ୍କୁ ସ୍ୱାସ୍ଥ୍ୟ ରକ୍ଷା ସମ୍ବନ୍ଧରେ ଶିକ୍ଷା ଦେଲେ, ଦେବତାଙ୍କ କୋପରୁ ଯେ ରୋଗ ବ୍ୟାଧି ହୁଏନା ବରଂ ଅଯତ୍ନ ଓ ଅଜ୍ଞତାରୁ ହୁଏ ଏହା ଲୋକମାନଙ୍କୁ ବୁଝାଇଲେ ଏବଂ ଏହାର ପ୍ରତିକାର କଲେ । ଏଇ ଲୋକମାନଙ୍କର ସର୍ବନିମ୍ନ ଆବଶ୍ୟକତା ପୂର୍ଣ୍ଣ ହୁଏ ନାହିଁ । ସେହି କାରଣରୁ ସେମାନଙ୍କୁ ଖାଦ୍ୟ, ବସ୍ତ୍ର, ଔଷଧ ଯୋଗାଇ ଦେଉଥିଲେ ପାଦ୍ରି ସାହେବ । କୌଣସି ପାତର ଅନ୍ତର ନକରି ସମସ୍ତଙ୍କର ସେବା କରୁଥିଲେ ଏବଂ ସେମାନଙ୍କୁ ଦୁଃଖ ଦୁର୍ଦ୍ଦଶାରୁ ପରିତ୍ରାଣ କରିବା ପାଇଁ ପ୍ରଭୁ ଯୀଶୁଙ୍କୁ ପ୍ରାର୍ଥନା କରୁଥିଲେ । ପ୍ରାର୍ଥନା ଯେ ମଣିଷକୁ ଅଦ୍ଭୁତ ଶକ୍ତି ପ୍ରଦାନ କରେ ଏବଂ ସେମାନଙ୍କୁ ବୁଝାଉଥିଲେ ।

ଦୁଇବର୍ଷ ମଧ୍ୟରେ ଯେଉଁମାନେ ନିଜ ଇଚ୍ଛାରେ ଯୀଶୁଙ୍କୁ ତ୍ରାଣକର୍ତ୍ତା ପ୍ରଭୁ ବୋଲି ଗ୍ରହଣ କରିବାକୁ ପ୍ରସ୍ତୁତ ଥିଲେ ସେମାନଙ୍କୁ ଧର୍ମ ଓ ବିଶ୍ୱାସ ବଦଳ କରିବାର ଅଧିକାର

ଦେଇଛି ସମ୍ବିଧାନ । ସେ କୌଣସି ବେଆଇନ ବା ଧର୍ମ ବିରୁଦ୍ଧ କାର୍ଯ୍ୟ କରିନାହାନ୍ତି । ମୁଣ୍ଡିଆ ଉପରେ ପ୍ରାର୍ଥନା ମନ୍ଦିର ସ୍ଥାପନ କରାଯାଇଛି । ସାତଟି ପରିବାରକୁ ଖ୍ରୀଷ୍ଟଧର୍ମରେ ଦୀକ୍ଷିତ କରିବା ପାଇଁ ବ୍ରୁଦନ ଉତ୍ସବର ସମସ୍ତ ଆୟୋଜନ ଶେଷ ହୋଇଛି ।

ପାଦ୍ରି ସାହେବଙ୍କ ମାନସପଟରେ ପ୍ରକଟ ହେଉଥିଲା ପ୍ରଭୁ ଯୀଶୁଙ୍କ କରୁଣାମୟ ମୂର୍ତ୍ତି । ଖ୍ରୀଷ୍ଟଧର୍ମର କଥା ଲୋକମାନଙ୍କୁ କହନ୍ତି ବୋଲି ତାଙ୍କ ବିରୋଧରେ ପ୍ରଚାର ଅଭିଯାନ ଚଳାଇଥିବା ଲୋକମାନଙ୍କୁ କ୍ଷମା କରିଦେବା ପାଇଁ ପ୍ରଭୁଙ୍କୁ ନିବେଦନ କରନ୍ତ ପାଦ୍ରି ସାହେବ । କାରଣ ସେ ଜାଣନ୍ତି ଯେ, ସେମାନେ କ'ଣ କରୁଛନ୍ତି ଜାଣନ୍ତି ନାହିଁ ।

କିଶୋର ଓ ମେଘବତୀ ପାଖ କୋଠରୀରେ ଶୋଇ ପଡ଼ିଥିଲେ । ତାଙ୍କ ସହିତ ବାରିପଦାରୁ ଆସିଥିବା ସହଯୋଗୀ କେଦାର ମଧ୍ୟ ଆଉଗୋଟେ ଚାଳିଆରେ ଶୋଇ ପଡ଼ିଥିଲେ । କିନ୍ତୁ ଗରମ ଓ ଗୁମୁଟି ଯୋଗୁଁ ନିଦ ହେଉନଥିଲା ପାଦ୍ରି ସାହେବଙ୍କୁ ।

ବାହାରେ କାହାର ପାଦଶବ୍ଦ ଶୁଣାଗଲା । ଜନ୍ତୁ ଜାନୁଆର ହୋଇଥିବେ ଭାବି ନୀରବ ରହିଲେ ପାଦ୍ରି ସାହେବ । ପରେ ପରେ ସେଇ ଶବ୍ଦ ଆହୁରି ସ୍ପଷ୍ଟ ହେଲା ଏବଂ ଜଣେ ନୁହେଁ ଦଳେ ଲୋକ ମୁଣ୍ଡିଆଉପରକୁ ଆସୁଥିବା ଅନୁମାନ କଲେସେ । ଏତେ ରାତିରେ ମୁଣ୍ଡିଆ ଉପରକୁ ଆସିବାର କାରଣ ଜାଣିପାରିଲେ ନାହିଁ ସାହେବ । କିନ୍ତୁ ସେମାନେ ଯେ ତାଙ୍କ ଅନୁଗାମୀ ନୁହଁନ୍ତି ଏହା ମଧ୍ୟ ବୁଝି ପାରିଲେ ସେ ସେମାନଙ୍କର ସ୍ଲୋଗାନରୁ ।

ଦରଜା ବନ୍ଦ ଥିଲା। ବାହାରୁ ଚାପ ଦେବାରୁ ଦରଜା ଖୋଲିଗଲା ।

ଟର୍ଚ୍ଚ ଆଲୁଅରେ ସେମାନଙ୍କୁ ଦେଖି ବିସ୍ମିତ ହେଲେ ସାହେବ । ବୈଶ୍ୱାନର ଓ ନାରଣ ଦେହୁରୀ ଆଉ କେତେଥର ତାଙ୍କୁ ଭେଟିଥିଲେ ଏବଂ ଧମକ ଚମକ ଦେଇଥିଲେ । ଏଇ କଥା ମନେ ପଡ଼ିଗଲା ତାଙ୍କର । ସେ ଦରଜା ବନ୍ଦ କରିବା ପୂର୍ବରୁ ଦଳେ ଲୋକ ଧସେଇ ପଶି ଆସିଲେ ଭିତରକୁ ।

ବୈଶ୍ୱାନର ରୁକ୍ଷ ସ୍ୱରରେ କହିଲେ- ଧର୍ମାନ୍ତରୀକରଣ କରିବା ଚଳିବ ନାହିଁ । ଦୁଃଖି ରଙ୍କି ରୋଗୀ ଓ ଗରିବଙ୍କୁ ଖାଦ୍ୟ, ଔଷଧ, ଲୁଗାପଟା, ଅର୍ଥ ଦେଇ ସେମାନଙ୍କୁ ଧର୍ମ ବଦଳ କରିବା ପାଇଁ ତୁମକୁ ଅଧିକାର କେହି ଦେଇ ନାହାନ୍ତି । ତୁମେ ଯଦି କୁସୁମବନ୍ଦୀ ଛାଡ଼ି ଫେରି ନଯାଅ, ତେବେ... ତାଙ୍କ ମୁହଁର କଥା ସରିବା ପୂର୍ବରୁ ନାରଣ ଦେହୁରୀର ଟାଙ୍ଗିଆ ଚୋଟ ପଡ଼ିଲା ପାଦ୍ରି ସାହେବଙ୍କ ବେକ ଉପରେ ।

କିଶୋର ଓ ମେଘବତୀ ତାଙ୍କୁ ରକ୍ଷାର କରିବା ପୂର୍ବରୁ ସେ ଆଉ ଚୋଟେ ମାରିଲା ନାରଣ । ପାଦ୍ରି ସାହେବଙ୍କ ତୁଣ୍ଡରୁ ବାହାରି ଆସୁଥିଲା କେତୋଟି ଶବ୍ଦ - ହେ ପ୍ରଭୁ ସେମାନଙ୍କୁ କ୍ଷମା କର, ସେମାନେ ଜାଣନ୍ତି ନାହିଁ କ'ଣ କରୁଛନ୍ତି । ବାହାରେ ନୃତ୍ୟ କରୁଥିଲେ ଦଳେ ଉନ୍ମତ୍ତ ପାଷାଣ । ▩ ■

# ପରାଜୟ

**ବିଜୟକୃଷ୍ଣ ମହାନ୍ତି**

ଦୁଇବର୍ଷ ତଳର କଥା । ଖଣ୍ଡେ ଚିଠି ପାଇଲି 'ନାରଦ' ପତ୍ରିକାର ସଂପାଦକ ନିରଞ୍ଜନ ଗନ୍ତାୟତଙ୍କ ନିକଟରୁ । 'ବ୍ରହ୍ମପୁରରୁ ନୂତନ ପତ୍ରିକାଟିଏ ଆତ୍ମ ପ୍ରକାଶ କରୁଛି ପୂଜାରେ । ଆପଣ ଦୟାକରି ଗପଟିଏ ପଠାଇଲେ ଉପକୃତ ହେବୁ ।'

ପୂଜାପାଇଁ ଗପ ଲେଖିବାର ଅନେକ ବରାଦ । ତେଣୁ ଏହି ନୂତନ ପତ୍ରିକା ଲାଗି ଗଳ୍ପ ଲେଖିବା ସମ୍ଭବ ନଥିଲା ମୋ ପକ୍ଷରେ । ସେଇ କଥା ଜଣାଇ ଚିଠିଟିଏ ଦେଇଦେଲି ସଂପାଦକଙ୍କ ପାଖକୁ । ଉତ୍ତର ଆସିଲା, ଅନେକ ଧନ୍ୟବାଦ ଆପଣଙ୍କ ଉତ୍ତର ପାଇଁ, ଆଜିକାଲିର ପ୍ରତିଷ୍ଠିତ ଲେଖକମାନଙ୍କୁ ପତ୍ର ଦେଲେ ସେମାନେ ନୀରବ ରହିଯାନ୍ତି, ସମ୍ଭବତଃ ଏଇଟା ସେମାନଙ୍କ ଅଭିଜ୍ଞତା । ଆପଣ ଯେ ଉତ୍ତର ଦେଲେ ଏହା ଏକ ବ୍ୟତିକ୍ରମ । ଆପଣ ବ୍ୟସ୍ତତା ମଧ୍ୟରେ ତଥାପି ଦୟାକରି ଚେଷ୍ଟା କରିବେ ଗପଟିଏ ପଠାଇବା ପାଇଁ । ଯଦି ପାଇନପାରୁ ଜାଣିବୁ ଦୁର୍ଭାଗ୍ୟ ।

ଗପଟିଏ କିନ୍ତୁ ପଠାଇ ପାରି ନଥିଲି । ସେ କଥା ଏକଦମ୍ ଭୁଲିଯାଇଥିଲି । ମାତ୍ର ଏ ବର୍ଷ ପୁଣି ଚିଠି ପାଇଲି ନିରଞ୍ଜନ ବାବୁଙ୍କ ନିକଟରୁ । ଆପଣଙ୍କର ମନେଥିବ ଗତବର୍ଷ ଆପଣ ଆମ ପତ୍ରିକାକୁ ଗପ ନପଠାଇ ନିରାଶ କରିଥିଲେ, ମାତ୍ର ଏ ବର୍ଷ ଆମ୍ଭେମାନେ ଯେପରି ହତାଶ ନ ହେଉ । ଯଥେଷ୍ଟ ପୂର୍ବରୁ ତେଣୁ ଅନୁରୋଧ ଜଣାଇଲୁ । ଜଣାଇ ରଖୁଛୁ 'ନାରଦ' ପତ୍ରିକାଟିକୁ ମାସିକ କରିବା ସଂଭବ ହେଲାନି, କେବଳ ପୂଜାରେ ହିଁ ପ୍ରକାଶ ପାଇବ । ଗତ ବର୍ଷ ପୂଜାରେ ପ୍ରକାଶିତ 'ନାରଦ' ଆପଣ ପାଇଥିବେ, ଡାକରେ ପଠାଇଥିଲୁ ।'

ଡାକରେ କିନ୍ତୁ ପତ୍ରିକାଟି ପାଇନଥିଲି । ମାତ୍ର ସଂପାଦକ ମହାଶୟ ଯେପରି ଜୋକ ପରି ଲାଗିଛନ୍ତି, ଲେଖାଟି ନଦେଲେ ମୁକ୍ତି ନାହିଁ । ତେଣୁ ମୁଁ ଇଚ୍ଛା ବିରୁଦ୍ଧରେ ଗୋଟିଏ ଛୋଟ ଗପ ପଠାଇଦେଲି ସଂପାଦକଙ୍କ ପାଖକୁ । ଗତ ବର୍ଷର ପୂଜା ସଂଖ୍ୟା 'ନାରଦ' ପାଇନଥିବା କଥା ଜଣାଇ ଦେଇଥିଲି ।

ମାତ୍ର ତା ସତ୍ତ୍ୱେ ମୁକ୍ତି କାହିଁ ? ସାତ ଦିନ ପରେ ସଂପାଦକଙ୍କଠାରୁ ପତ୍ର ପାଇଲି

'ଯେଉଁ ଗପଟି ଆପଣ ଆମ ପତ୍ରିକା ପାଇଁ ପଠାଇଛନ୍ତି, ତା' କେବଳ ଆମମାନଙ୍କୁ ଠକିବା ପାଇଁ । ଏହା ଏକ ମାମୁଲି ଗପ ମାତ୍ର । ଆପଣଙ୍କ ଲେଖନୀରୁ ଏ ଧରଣର ଗପ ଆମ୍ଭେ ଆଶା କରି ନଥିଲୁ । ଆଣଙ୍କଠାରୁ ଏକ ଦୀର୍ଘ ଚମତ୍‌କାର ଗପ ପାଇବାର ଏବେ ବି ଆଶା ରଖିଛୁ । ଗୋଟିଏ ପ୍ରତିଷ୍ଠିତ ପତ୍ରିକାକୁ ଗପଟିଏ ଦେବା ବେଳେ ଯେଉଁ ସଚେତନତା ରହେ ଆପଣଙ୍କର, ସଂଭବତଃ ସେ ସଚେତନତା ଆପଣଙ୍କର ରହିନି ଆମ ପାଖକୁ ଗପଟିଏ ପଠାଇଲାବେଳେ । ମୁଁ ସପ୍ତାହକ ମଧ୍ୟରେ ଯାଉଛି ଆପଣଙ୍କ ପାଖକୁ, ଗୋଟିଏ ଉତ୍କୃଷ୍ଟ ଲେଖା ଆପଣଙ୍କଠାରୁ ପାଇବା ଆଶାରେ । ଆପଣ ଲେଖାଟି ପ୍ରସ୍ତୁତ କରିନଥିଲେ ମୁଁ ନିଜେ ଦୁଇଦିନ ପୁରୀରେ ଅପେକ୍ଷା କରିବି । ଆମ୍ଭମାନଙ୍କର ସଂପାଦକମଣ୍ଡଳୀରେ ସିଦ୍ଧାନ୍ତ ନିଆଯାଇଛି ଯେ ଉତ୍କୃଷ୍ଟ ଗପଟିଏ ଆପଣଙ୍କଠାରୁ ଆଣିବୁ ଆମେ । ଆମ୍ଭମାନଙ୍କର ଏ ଜିଦ୍‌କୁ ଧୃଷ୍ଟତା ନ ଭାବି ପିଲାମାନଙ୍କର ଅଳି ବୋଲି ହିଁ ମନେ କରିବେ ।'

ଏହାତ ଏକ ପ୍ରଚଣ୍ଡ ଆତଙ୍କ ମୋ ପାଇଁ । ଗପ ଲେଖି ବିପଦକୁ ଆମନ୍ତ୍ରଣ କରିବା ହିଁ ସାର ହେଲା ।

ସାତ ଦିନ ପର ଘଟଣା । ସେଦିନ ରବିବାର । ମୁଁ ସକାଳେ ଏକ ଜରୁରୀ କାର୍ଯ୍ୟରେ ବାହାରକୁ ଯାଇଥିଲି, ବାରଟା ବେଳେ ଫେରି ପତ୍ନୀଙ୍କଠାରୁ ଶୁଣିଲି 'ନାରଦ' ପତ୍ରିକାର ସଂପାଦକ ଆସି ଡ୍ରଇଁ ରୁମ୍‌ରେ ଅନେକ ବେଳ ଅପେକ୍ଷା କରିଥିଲେ । ମୋର ଆସିବା ଡେରି ଦେଖି ଚାଲିଗଲେ । ମାତ୍ର ମୋ ପାଇଁ ଖଣ୍ଡେ ପତ୍ର ରଖି ଦେଇ ଯାଇଛନ୍ତି ।

ଏ ସଂବାଦରେ ମୁଁ ଚମକି ପଡ଼ିଲି, ମାତ୍ର ଚମକି ପଡ଼ିଲି କାହିଁକି ? ତରତର ହୋଇ ଡ୍ରଇଁରୁମ୍‌କୁ ପଶିଗଲି । ମୋ ପାଇଁ ଲେଖା ଯାଇଥିବା ଚଉତା ଚିଠିଟି ଦ୍ରୁତ ହସ୍ତରେ ଟେବୁଲ୍ ଉପରୁ ଉଠାଇ ଆଣି ପଢ଼ିଲି -

ମହାଶୟ, ନମସ୍କାର ନେବେ । ଆସିଥିଲି ଦେଖା ହେଲାନି । ମାତ୍ର ପ୍ରୟୋଜନ ମେଣ୍ଟି ଯାଇଛି । 'ଅମୃତାୟନ' ପତ୍ରିକାକୁ ଦେବାଲାଗି ଯେଉଁ ଗପଟି ଖାମ୍ ଭିତରେ ଥୋଇଥିଲେ ଟେବୁଲ୍ ଉପରେ, ସେଇଟି ମୁଁ ନେଇଯାଉଛି । ଗପଟି ପଢ଼ି ନେଇଛି, ଚମତ୍କାର ଗପଟିଏ । ଏମିତି ଗପ ଦରକାର ଥିଲା ଆମ ପତ୍ରିକା ପାଇଁ । ଆମ ପତ୍ରିକା ପାଇଁ ଯେଉଁ ଛୋଟ ଗପଟି ପଠାଇଥିଲେ ଫେରାଇ ଦେଇଗଲି । ଏଇଟିକୁ 'ଅମୃତାୟନ'କୁ ପଠାଇଦେବେ । 'ନାରଦ' ପାଇଁ ଉଦ୍ଦିଷ୍ଟ ଗପ 'ଅମୃତାୟନ'କୁ ଯିବ ମୁଁ ବିଶ୍ୱାସ କରୁନି । ଜଣେ ଲେଖକର ଚିନ୍ତାରେ ଏ ପକ୍ଷପାତିତା ଏକ ଅକ୍ଷମଣୀୟ ଅପରାଧ ନୁହେଁ କି ? ଗତ ବର୍ଷର 'ନାରଦ' ପତ୍ରିକାଟି ରଖି ଦେଇଗଲି, ଦେଖିବେ ।

ବିନୀତ

ନିରଞ୍ଜନ ଗନ୍ତାୟତ 

# ବିପନ୍ନ ଅସ୍ତିତ୍ୱ

ବରେନ୍ଦ୍ରକୃଷ୍ଣ ଧଳ

ଚମ୍ପା ଟ୍ରେନ୍‌ରେ ବସି ଚାରିଆଡ଼େ ଆଉଥରେ ଆଖି ବୁଲେଇ ନେଲା । ଉତ୍କଳ ଏକ୍ସପ୍ରେସ୍‌ର ପାସେଞ୍ଜର ଡବାଟା ପୁରା ଭର୍ତ୍ତି ହୋଇ ଯାଇଛି । ଚମ୍ପା ପାଖରେ ବଇଁଶୀ ବସିଛି । ବଇଁଶୀ ତାଙ୍କ ଗାଁର । ଟ୍ରେନଟା ଛାଡ଼ିବାକୁ ଡେରି ଅଛି ବୋଧହୁଏ । ବଇଁଶୀ ଉଠିଯାଇ ଷ୍ଟେସନ୍‌ରୁ ଦୁଇଟା ଠୁଙ୍ଗାରେ ପୁରି ଆଳୁଦମ୍ କିଣି ଆଣିଲା । ଗୋଟାଏ ଠୁଙ୍ଗା ଚମ୍ପାକୁ ଦେଇ ଅନ୍ୟଟାରୁ ନିଜେ ଖାଇଲା । ଚମ୍ପା କିଛି ଆପତ୍ତି କଲା ନାହିଁ ।

ଟ୍ରେନ୍ ଛାଡ଼ିବା ହୁଇସିଲ୍ ଦେଲା । ଚମ୍ପାକୁ ଆଉ ଟିକେ ଲାଗିକରି ବଇଁଶୀ ବସିଗଲା । ଚମ୍ପା କିଛି କହିଲାନି । କ'ଣ ବା କହିବ । ବରଂ ବଇଁଶୀଟା ସାଙ୍ଗରେ ଥାଉ । ମଝିରେ ମଝିରେ ବଇଁଶୀ ସମସ୍ତଙ୍କୁ ଅନାଇ ତଳିଆ ହାତ ନେଇ ଚମ୍ପାର ସେଇ ପୁରୁଷିଆ ଜଙ୍ଘଟାକୁ ଚିପି ଦେଉଛି । ଚମ୍ପା କିଛି କହିଲାନି । ସମୟ ବଦଳିଯାଇଛି । ନଚେତ ଚମ୍ପା ଦିହରେ ଲାଗିକରି ବସିବା ଦୂରେ ଥାଉ ତାଙ୍କୁ ଚାହିଁବାକୁ ବଇଁଶୀର ସାହାସ ନଥିଲା । ସାରା ଡବାଟା ଭିତରେ ଚମ୍ପାଭଳି ସୁନ୍ଦରୀ କେହି ନାହିଁ । ଚମ୍ପା ଦିହଟା ମଝିରେ ମଝିରେ ବଇଁଶୀ ଜାଣିଶୁଣି ଚାପି ଦେଉଛି । ଆଃ ଚମ୍ପା ଦିହଟା କେଡ଼େ କଅଁଳିଆ ? ବଇଁଶୀର ମନଟା ଆନନ୍ଦରେ କଳୁଳି ଯାଉଛି ।

ରାତି ହେଲା । ପାସେଞ୍ଜର ଡବାର ଉପର ଥାକରେ ବଇଁଶୀ ଚମ୍ପା ପାଇଁ ଗାମୁଛା ପାରି ଜାଗା ରଖିଛି । ଚମ୍ପାକୁ ପଚାରିଲା ଉପରକୁ ଯିବୁ କିଲୋ ? ଚମ୍ପା ବଇଁଶୀକୁ ଚାହିଁ ହସିଦେଇ କହିଲା ତୁ ମତେ ଯେତେ ସେବା କଲୁଣି ମୋର ଗେରସ୍ତ ସେତେ କରିନି । ବଇଁଶୀ ହସିଲା । ଚମ୍ପାର ପିଚାକୁ ଧରି ଉପରକୁ ଉଠାଇ ଦେଲା । ଚମ୍ପାର ସେଥିପ୍ରତି ନିଘା ନାହିଁ । ବଇଁଶୀ ମନଟା କିନ୍ତୁ ଖୁସୀରେ ଭରିଗଲା । ଝରକାକୁ ଆଉଜି ବସି ବସି ଚମ୍ପାକୁ ସ୍ୱପ୍ନ ଦେଖିଲା । ବଇଁଶୀ ଚିନ୍ତା କରୁଥିଲା କି କଷ୍ଟରେ ଗତ ବର୍ଷଟା ଯାକ କଟିଛି । ବଇଁଶୀ ହେଗିକା ସମସ୍ତେ ଓଡ଼ିଶାର ଦକ୍ଷିଣ ଜିଲ୍ଲାରୁ କାମ କରିବା ପାଇଁ ଆସିଥିଲେ ପଞ୍ଜାବକୁ । ସବୁଦାୟ ଆସିଥିଲେ ୮୨ ଜଣ । ତା ଭିତରେ ଗେରସ୍ତ-ଭାରିଜା ଥିଲେ ୨୨ ଯୋଡ଼ା । ବାକିତକ ମିଣିପି । ଚମ୍ପା ତା ମିଣିପ ନକୁଳ ଭୋଇ ସାଙ୍ଗରେ ଆସିଥିଲା କାମ କରିବାକୁ ପଇସା କମାଇ ଦୁହେଁ ଗାଁରେ ଗୋଟେ ପାନ-ଚା ଦୋକାନ ଦେବ । ଦାଦନ ଠିକାଦାର ଲିଙ୍ଗରାଜ ନାୟକ ନକୁଳ ଆଉ ଧରଣୀ ଜଗିଆରେ

ସମସ୍ତଙ୍କୁ ସଂଗ୍ରହ କରିଥିଲା । ଦଳର ଅଧିକାଂଶ ଯୁବକ-ଯୁବତୀ ।

ରାତି ଅଧକୁ ଧରଣୀ ଆସି ବଇଁଶୀ ପାଖରେ ବସିଲା । ବଇଁଶୀକୁ ନିଦ ଆସୁନି । ଚମ୍ପା କଥା ଭାବୁଛି । ମଝିରେ ମଝିରେ ଚମ୍ପାକୁ ଅନାଉଛି । ଧରଣୀ ପଚାରିଲା ସବୁ ସୁମାରୀ କରିଥିଲୁ । ବଇଁଶୀ କିଛି ନକହି ସମ୍ମତିସୂଚକ ମୁଣ୍ଡ ଟୁଙ୍ଗାରିଲା । ଧରଣୀ-ବଇଁଶରୀ ଦୁହେଁ ଷଣ୍ଢମାର୍କା ଯୁଆନ । ନକୁଳ କଥାରେ ପଡ଼ି ଦୁହେଁ କାମ କରିବାକୁ ଆସିଥିଲେ । ବଇଁଶୀ ବାହା ହେଇନି । ଧରଣୀ ଘରେ ବାପ-ମା'ଙ୍କ ପାଖରେ ବର୍ଷକର ପୁଅ ଆଉ ଭାରିଯାକୁ ଛାଡ଼ି ଆସିଛି । ବଇଁଶୀକୁ କହିଲା- ଏ ଗାଡ଼ିରେ ବସିଲା ପରେ ପରତେ ହେଲା ଯେ ଗାଁକୁ ଯାଉଛେ । ପୁଅ ଆଉ ଭାରିଯା କଥା ବର୍ଷ ସାରା ଭାବିଛି । ଶଳା ଲିଙ୍ଗା ନାହାକକୁ ଯାଇ ପାନେ ଦେବା । ବଇଁଶୀ କିଛି କହିଲାନି । ଧରଣୀ ବଇଁଶୀକୁ ହଲାଇ ଦେଇ କହିଲା କିବେ କଣ କିଛି କହୁନୁ ? ନିଦ ଲାଗିଲାଣି ନା କଣ ? ବଇଁଶୀ ମୁହଁ ଖୋଲିଲା । କଣ କହିବି ? ତୋର ସିନା ବା, ମା ଭାରିଯା, ପୁଅ ସମସ୍ତେ ଅଛନ୍ତି । ତୁ ଭାବୁଛୁ ମୋର କିଏ ଅଛି ? ମୋର କିଏ ଅଛି ? ମା' ବୁଢ଼ି ତାର ଦୁଃଖେ ସୁଖେ ଚଳିଯାଉଛି ।

-ଗାଁ କୁ ଯାଇ ଭଲ ଟୋକି ଦେଖି ଗୋଟେ ବାହା ହେଇ ପଡ଼ିବୁ ।

- କେଉଁଠି ଭଲ ଟୋକି ମିଳୁଛନ୍ତି ?

ଧରଣୀ ବଇଁଶୀ ମୁହଁକୁ ଚାହିଁଲା ଉତ୍କଳ ଏକ୍ସପ୍ରେସ୍‌ର ସେଇ ଈଷତ୍ ଆଲୋକରେ ବଇଁଶୀର ମୁହଁଟା ବିଷର୍ଣ୍ଣ ହୋଇ ଉଠିଥାଏ । ମନ ଭିତରେ ଚିନ୍ତାର ଝଡ଼ ଉଠିଥାଏ । ଧରଣୀ ଚୁପ୍‌ଚାପ୍ ପଚାରିଲା ହଇବେ ଚମ୍ପା ପଛରେ ଗତ କେତେ ଦିନ ହେଲା କାହିଁକି ଲାଗିଛୁ? ସେ ବେଧିକୁ କଣ ରଖିବାକୁ ଇଚ୍ଛା ହେଲାଣି କିରେ ? ବଇଁଶୀ ଧରଣୀ କଥାରେ ଟିକେ ଚମକି ଉଠିଲା । ତାପରେ ସେଇଭଳି ଆସ୍ତ ଆସ୍ତେ କହିଲା କେହି ନମିଳିଲେ ଚମ୍ପାକୁ ରଖିଲେ କ୍ଷତି କଣ ? ଧରଣୀ ମନେ ମନେ ବିରକ୍ତ ହେଲା । ତେବେ ପ୍ରକାଶ୍ୟରେ କହିଲା ସିଏ ହଜାର ଘାଟରେ ପାଣି ପିଇଛି । ତୁ ତାକୁ ସମ୍ଭାଳି ପାରିବୁ । ଦେଖ୍ ତୋ କଥା- ତୁ ବୁଝିବୁ । କିନ୍ତୁ ନକୁଳ କଣ ଚମ୍ପାକୁ ଛାଡ଼ି ଦେବ ?

ଧରଣୀ, ବଇଁଶୀ, ନକୁଳ ସମସ୍ତେ ପାଖ- ପାଖ ଗାଁରେ । ଧରଣୀ ଘର ତେଲଦିଆ, ବଇଁଶୀର ଘୁମା ଆଉନକୁଳ ଘର ଗବକୁଣ୍ଡରେ । ସବୁ ଗାଁ ତିନି/ ଚାରି କୋଶ ମଧ୍ୟରେ । ତେଣୁ ସମସ୍ତେ ସମସ୍ତିଙ୍କି ପିଲାଦିନୁ ଜାଣନ୍ତି । ସମସ୍ତେ ହରିଜନ ବାଉରି ସଂପ୍ରଦାୟର । ସମସ୍ତଙ୍କ ବୟସ ଛବିଶ ବା ସତେଇଶି ମଧ୍ୟରେ । ନକୁଳ ଚାରିବର୍ଷ ହେଲା ଚମ୍ପାକୁ ବାହାହୋଇଛି । ଚମ୍ପା ଆଖପାଖ ତିନି/ଚାରି ଖଣ୍ଡ ଗାଁ ଭିତରେ ସୁନ୍ଦରୀ । ନକୁଳ ବାହା ହୋଇ ଘରକୁ ଆସିବା ପରେ ଚମ୍ପାକୁ ଦେଖି ଗାଁ ମାଇପିଏ କଥାବାର୍ତ୍ତା ହେଲେ ବାଉରି କୁଳରେ ଏଡ଼େ ସୁନ୍ଦରୀ ଝିଅ ଥିଲା । ଚମ୍ପା ବାହା ହୋଇ ନକୁଳ ଘରକୁ ଆଲୁଅ କଲା । ନକୁଳ ସ୍ତୀର ପଣତ କାନିରେ ବାନ୍ଧି

ହୋଇ ରହିଗଲା । ବର୍ଷେ ଗଲା ଦି'ବର୍ଷ ଗଲା ହେଲେ ନକୁଳା ଚମ୍ପାକୁ ବିଲକୁ କାମ କରିବାକୁ ପଠାଇଲା ନାହିଁ । ନକୁଳର ବାପ ନାହିଁ । ନକୁଳ ଜନ୍ମ ହେବା ପରେ ପରେ ପଇସା କମାଇବାପାଇଁ କଲିକତା ଚଟକଳକୁ କାମ କରିବାକୁ ଗଲା । ସେଇ ଯାଇଛି ଯେ ଯାଇଛି । ଆଉ ଫେରି ନାହିଁ । ନକୁଳକୁ ଧରି ତା' ମା ସେଇ କଞ୍ଚାବୟସରୁ ତା' ବାପକୁ ଅପେକ୍ଷା କରି ଆଉ ଦ୍ୱିତୀୟ ମିଣିପ କଲା ନାହିଁ । କିନ୍ତୁ ଅନେକ ଗାଁରେ କହନ୍ତି ବେଳେବେଳେ ନକୁଳାଙ୍କ ଘରୁ ରାତିରେ ହସ ଖୁସି ଶବ୍ଦ ଶୁଣାଯାଏ । କେତେକ କହନ୍ତି ସରପଞ୍ଚ ଚିନ୍ତା ସାଆନ୍ତଙ୍କ ଖଳାବାଡ଼ି ଲିପାପୋଛା କରୁଥିବା ବେଳେ ତାର ଫୁଟିଲା ଫୁଟିଲା ଦିହ ଆଉ ପୂରନ୍ତା ସ୍ତନକୁ ଦେଖି ନିଜେ ଚିନ୍ତା ସାଆନ୍ତେ ତା ପ୍ରତି ଆସକ୍ତ ହୋଇ ପଡ଼ିଥିଲେ । ଲିପାପୋଛ ଅଧାରୁ ତାକୁ ଖମାର ଘର ଭିତରକୁ ଡାକିନେଇ ନିଜର କାମନା ଚରିତାର୍ଥ କରିଥିଲେ । ସେଇ ଦିନୁ ଅଧିକାଂଶ ଦିନ ନକୁଳା ମା' ଖମାର ଘରକୁ ଯିବା-ଆସିବା କରେ । ସାଆନ୍ତାଙ୍କ ଆଡୁ ସେ ପେଟ ହୋଇଥିଲା । ମାତ୍ର ସା'ନ୍ତେ ସହରକୁ ପଠାଇ ତାର ପେଟ ଭଙ୍ଗାଇ ଦେଇଥିଲେ । ତା' ପରଠାରୁ ତା'ର ଡଉଲ-ଡାଉଲ ରୂପ ଭାଙ୍ଗି ଯାଇଥିଲା । ଯେତେ ଚେଷ୍ଟା କଲେ ମଧ୍ୟ ତା ଆଉ ଫେରି ନଥିଲା କେଜାଣି କାହିଁକି ସେହି ଦିନଠାରୁ ନକୁଳା ମା' ଚିଡ଼ି ଚିଡ଼ା ସ୍ୱଭାବର ହୋଇଯାଇଛି । ଚମ୍ପାକୁ ନକୁଳା ବିଲକୁ କାମ କରିବାପାଇଁ ନପଠାଇବାରୁ ତା ମା' ଗରଗର୍ ହୁଏ । ତାକୁ ଏ ସବୁ ଭଲ ଲାଗେ ନାହିଁ । ସଂଧ୍ୟାବେଳକୁ ଚମ୍ପା ମୁହଁରେ ଆଫଗାନ୍ ସ୍ନୋ ମାଖି ବେଶଭୁଷା ହୋଇ ବସିଲେ ନକୁଳା ମା' ମନରେ ନିଆଁ ଜଳି ଉଠେ । ଚମ୍ପାର ରୂପ ଝଟକି ଉଠେ । ନକୁଳା ମା'ର ଭୟ ହୁଏ । ଚମ୍ପାକୁ ଦେଖି ଯଦି କିଏ ତାକୁ ଟେକି ନିଏ ତେବେ ନକୁଳା ପାଗଳ ହୋଇଯିବ । ତେଣୁ ରାଗରେ ଚମ୍ପାକୁ କୁହେ ବକେ । କାହିଁକି ଏ ରୂପ ସଜେଇ ବସିଛୁ କିଲୋ ? କୋଉ ନାଗରକୁ ଆସିବାପାଇଁ କହିଛୁ ? ନକୁଳ ଉପରେ ମଝିରେ ମଝିରେ ରାଗରେ ଅଜସ୍ର ଗାଳି ବର୍ଷା ହୁଏ । ମାଇକିନାକୁ ଘରେ ବସାଇ ଗଣ୍ଡି ମୋଟା କରୁଛୁ କିଆଁ ? ପରଘରକୁ କାମ ପାଇଁ ନପଠା, ହେଲେ ନିଜର ଯେଉଁ ଏକରେ/ଦେଢ଼ ଏକର ଜମି ଅଛି ସେଥିରେ କାମ କରୁନି ?

ନକୁଳ ମନ ଚମ୍ପାକୁ ପାଇ ଖୁସିରେ ଭରପୁର । କିନ୍ତୁ ଗୋଟିଏ କଥା ପାଇଁ ତାର ଦୁଃଖ। ତା ସାଙ୍ଗମାନେ ତା ସାଙ୍ଗରେ ତାପରେ ବାହାହେଇ ପିଲାଙ୍କ ବାପ ହେଲେଣି ଅଥଚ ଚମ୍ପା ପେଟ ଭାରି ହେଉ ନାହିଁ । ଚମ୍ପା ଭଳି ମାଇକିନା ପାଇବା ଭାଗ୍ୟର କଥା । କିନ୍ତୁ ଚମ୍ପା ଫଳଉନି କାହିଁକି ? ଏଇ କଥାକୁ ନେଇ ତା ମା' ଗାଁ ସାରା କହି ବୁଲିଲାଣି ତା ବୋହୂ ଦେଖାସୁନ୍ଦର ପଳାଶ ଫୁଲ । ବାନ୍ଝ୍ । ନହେଲେ ଚାରିବର୍ଷ ହେଲା ବାହା ହେଲାଣି ପିଲାଟାଏ ଦେଇ ପାରନ୍ତାନି । ନକୁଳ ଯେତେ ତା ମା'କୁ ବୁଝାଏ ସେ ବୁଝିବାକୁ ନାରାଜ । ମା'କୁ ସନ୍ତୁଷ୍ଟ କରିବାପାଇଁ ଚମ୍ପା ବିଲରେ କାମ କଲା । ଧାନ ରୁଆଠାରୁ ଆରମ୍ଭ କରି ରୋଷେଇ ପର୍ଯ୍ୟନ୍ତ ସବୁ କଲା । କାମ କରୁଥିବା ବେଳେ ବର୍ଷାରେ ତା ଦିହରେ ଲୁଗାଟା

ଅଠାଭଳି ଲେସି ହୋଇଯାଏ । ସାରା ଦିହଟା ଲୁଗା ଉପରକୁ ଫୁଟି ଉଠେ । ବଡ଼ ବଡ଼ ସ୍ତନ ଦୁଇଟା ଉଦ୍ଧତ ଶିଙ୍ଘଭଳି ଉପରକୁ ଠେଲି ହୋଇ ଆସେ । ନଚାହିଁବା ଲୋକ ତାକୁ ଚାହେଁ । ଆଖ ପାଖ ବିଲରେ କାମ କରୁଥିବା ଟୋକା-ବୁଢ଼ା ସମସ୍ତେ ବିଭିନ୍ନ ବାହାନା କରି ଚମ୍ପା କାମ କରୁଥିବା କିଆରି ହିଡ଼ ଦେଇ ମଝିରେ ମଝିରେ ଘୁରି ଯା'ନ୍ତି ।

ଚମ୍ପା ଏତେ କରି ମଧ୍ୟ ବୁଢ଼ୀ ଖୁସି ନୁହେଁ । ସେ ନିଶ୍ଚିତ ଚମ୍ପା ବାନ୍ଝ । ସେ ଚାହେଁନା ନକୁଳ ତା ବଉଁଶ ବୁଡ଼ିବାର କାରଣ ନହେଉ । ତେଣୁ ଆଉ ଗୋଟେ ଟୋକି ଦେଖି ନକୁଳକୁ ବାହା କରିଦେବ । ଏ ଘଟଣା ନେଇ ମା' ପୁଅଙ୍କ ମଧ୍ୟରେ ଅନେକ ସମୟରେ ପାଟିତୁଣ୍ଡ ଲାଗିଲାଣି । ଚମ୍ପା ବିଚାରୀ କରିବ କ'ଣ ? ତା'ର ଦୋଷ କଣ ସେ ବୁଝିପାରେ ନାହିଁ ।

ନକୁଳ ପଞ୍ଜାବ ଏକା ଆସିବ ବୋଲି ପ୍ରଥମେ ସ୍ଥିର କରିଥିଲା । କିନ୍ତୁ ସେଦିନର କଥାଶୁଣି ସେ ଚମ୍ପାକୁ ନେଇ ପଞ୍ଜାବ ଯିବ ବୋଲି ସ୍ଥିର କଲା । ଚମ୍ପା ବିଲ କାମ ସାରି ଗାଁ ପୋଖରୀରେ ଗାଧୋଇ ଘରକୁ ଆସେ । ସେଦିନ ଚମ୍ପାର ଗାଧୋଇଯିବା ଡେରି ହୋଇଯାଇଥିଲା । ପୋଖରୀରେ କେହି ନଥିଲେ । ଚମ୍ପା ମନଖୁସିରେ ଦିହ ମୁଣ୍ଡ ଘଷାଘଷି ହୋଇ ଗାଧୋଉଛି । ଦିହରୁ ଲୁଗା ଖସି ଯାଇଛି । ପୋଖରୀ ପଛ ହୁଡ଼ା ଦେଇ ଯାଉଥିବା କୁମର ଚମ୍ପାକୁ ଏକା ଗାଧୋଉଥିବା ଦେଖି ଆଉ ଲୋଭ ସଂଭାଳି ପାରିଲାନି । ବୁଡ଼ା ପହଁରା ଦେଇ ଚମ୍ପା ପାଖରେ ପହଞ୍ଚି ପାଣି ଭିତରୁ ଚମ୍ପାର ସମଗ୍ର ଉଲଗ୍ନ ଦେହର ଶୋଭା ଦେଖି ନିଜକୁ ନିୟନ୍ତ୍ରଣରେ ରଖି ପାରିଲାନି । ହୁସ୍ କରି ପାଣି ଉପରକୁ ଉଠି ଚମ୍ପାକୁ କୁଣ୍ଢାଇ ଧରି ତା ମୁହଁରେ ଚୁମା ଉପରେ ଚୁମା ଦେଇଗଲା । ହଠାତ୍ ଏହି ଘଟଣାରେ ଚମ୍ପା କିଂକର୍ତ୍ତବ୍ୟବିମୁଢ଼ ହୋଇ ପଡ଼ିଲା । ମାତ୍ର ପରମୁହୂର୍ତ୍ତରେ କୁମର ମୁହଁରେ ଜୋରରେ ଖଡ୍ଡୁ ମୁଥାଏ ଦେଲା। ଚମ୍ପାର ସେଇ ଗୋଟାଏ ମାଡ଼ରେ କୁମର ଆଖିକୁ ଚିପି ଧରି ଚମ୍ପାକୁ ଛାଡ଼ିଦେଲା । ଚମ୍ପା କାଉଲୁ ବାଉଲୁ ହୋଇ ଅଧା ଲଙ୍ଗଳା ଦିହରେ କୂଳକୁ ପଳାଇ ଆସି ଏକା ନିଶ୍ୱାସରେ ଦୌଡ଼ିଲା । ତେବେ କୁମର ତା କଲା କର୍ମର ପ୍ରାୟଶ୍ଚିତ କଲା । ଚମ୍ପାର ଖଡ୍ଡୁ ମୁଷାରେ ତା ଡାହାଣ ପଟ ଆଖିଟା ସେଇ ଦିନଠୁ ଟେରା ହୋଇଗଲା ।

ବୈବାହିକ ଜୀବନର ଚାରିବର୍ଷ ଅତିକ୍ରମ କରିଗଲାଣି । ରାତିରେ ଚମ୍ପା ତାର ଫୁଗ୍ଗୁଳା ଦେହଟାକୁ ନକୁଳ କୋଳରେ ସମର୍ପିଦେଇ କାନ୍ଦେ । ମଝିରେ ମଝିରେ ନକୁଳକୁ କଥାଟା ବାଧେ । ତୋ ସ୍ତ୍ରୀ ବାନ୍ଝ । ତା ମନ କହେ ଚମ୍ପା ବାଞ୍ଝ ନୁହେଁ । ନିଶ୍ଚେ ଠାକୁର ତା ପେଟରେ ଛୁଆ ଦେବେ । ଚମ୍ପା ମଧ୍ୟ ମନେ ମନେ ଭାବେ ସତରେ ସେ କ'ଣ ବାଞ୍ଝ । ତା କପାଳରେ ଛୁଆ ନାହିଁ । ତା ମନ ସେଥିରେ ମାନେ ନାହିଁ । ଗର୍ଭଧାରଣ କରିବାର ସବୁ ସୂକ୍ଷ୍ମ ତତ୍ତ୍ୱ ଚମ୍ପାର ଜଣା ନାହିଁ । ସେ ଏତିକି ଜାଣେ ନାରୀ-ପୁରୁଷ ମଧ୍ୟରେ ସମ୍ଭୋଗହିଁ ସନ୍ତାନ ଉତ୍ପତ୍ତିର କାରଣ । ତେବେ ଚାରିବର୍ଷ ଧରି ସେ ପ୍ରତି ରାତିରେ ତା ସ୍ୱାମୀ ନକୁଳ ସହ

ନିୟମିତ ସମ୍ଯୋଗ କରି ଆସୁଥିଲେ ମଧ୍ଯ ତା କ୍ଷେତ୍ରରେ .. ଏ ବ୍ୟତିକ୍ରମ କାହିଁକି ?

ନକୁଳ ପଞ୍ଜାବକୁ ଚମ୍ପାକୁ ସାଙ୍ଗରେ ନେଇଗଲା । ନକୁଳ ଭାବିଲା ଚମ୍ପାକୁ ନେଇଗଲେ କାମକୁ କାମ ହେବ । ଦୁହେଁ ରୋଜଗାର କରିବେ । ରାତିରେ ରୋଷେଇ ଦାୟିତ୍ୱ ଆଉ ତାର ରହିବ ନାହିଁ । ଚମ୍ପାର ମନ ପରିବର୍ତ୍ତନ ହୋଇଯିବ । ଏଠି ଗାଁରେ ରହିଲେ ତା ମା' ତାକୁ କେତେବେଳେ ମାରିଦବ ନହେଲେ ଘରୁ ତଡ଼ି ଦେବ ।

ଏବେ ନକୁଳଙ୍କ ଗାଁ ପାଖରୁ କୋଶେ ଦେଢ଼ କୋଶ ଦୂରରେ ନୂଆ ଷ୍ଟେସନ୍ ହୋଇଛି । ନକୁଳର ଇଚ୍ଛା ସେଇ ଷ୍ଟେସନ୍ ପାଖରେଖଣ୍ଡେ ଦୋକାନ କରିବ । ତେଣୁ ପଞ୍ଜାବରେ ସେ ଆଉ ଚମ୍ପା ଦୁହେଁ ମିଶି କାମ କଲେ ଦୋକାନ ପାଇଁ ଟଙ୍କା ସଞ୍ଚି ପାରିବେ । ନାନା କଥା ଭାବି ନକୁଳ ଚମ୍ପାକୁ ସାଙ୍ଗରେ ଆଣିଥିଲା ।

ନକୁଳ ସପସ୍ତଙ୍କୁ ନେଇ ଡ୍ୟାମ ପାଖରେ ପଲା ଘର କରି ବସବାସ କରି କାମ ଆରମ୍ଭ କଲା। ଆରମ୍ଭରୁ ସମସ୍ତେ ଭାରି ଖୁସି । ଲିଙ୍ଗରାଜ ନାୟକକୁ ନକୁଳ ସାଙ୍ଗମାନେ ଜଲନ୍ଧରରେ ପହଞ୍ଚି ଦେଖିଲେ । ଜଲନ୍ଧରରୁ ସେମାନଙ୍କୁ ବସ୍‌ରେ ଡ୍ୟାମ ସାଇଟ୍‌କୁ ପଠାଇ ଦେଇ ଲିଙ୍ଗରାଜ ଗାଏବ । ନକୁଳ ଡ୍ୟାମ୍ ସାଇଟ୍‌ରେ ଥିବା ଠିକାଦାରବାବୁଙ୍କୁ ଦେଖାକଲା । ଅଧା ଅଧା ହିନ୍ଦୀରେ ଯାହା କହିଲା, ଯାହା ବୁଝିଲା ତାହା ହେଉଛି ଏହି ଏକ ହପ୍ତାହକୁ ହପ୍ତା ତାଙ୍କୁ ପଇସା ମିଳିବ । ରୋଗ ବୈରାଗ ହେଲେ କମ୍ପାନୀ ଡ଼ାକ୍ତର ଆସି ଦେଖିବ । ବ୍ୟସ୍ତ ହେବାର କିଛି ନାହିଁ । ଗାଁରୁ ବାହାରିବା ବେଳେ ସମସ୍ତଙ୍କୁ ଲିଙ୍ଗରାଜ ନାୟକ ଦୁଇଶହ ଲେଖାଏଁ ଟଙ୍କା ଦେଇଥିଲା । ଯେଉଁମାନେ ନିଜ ସ୍ତ୍ରୀ-ଛୁଆଙ୍କୁ ଧରି କାମ କରିବାକୁ ଆସିଲେ ଘରେ ବାପ-ମାଙ୍କୁ ଶହେ ଟଙ୍କା ଦେଇ ବାକି ଟଙ୍କାରେ ଚାଉଳ-ଡାଲି କିଣି ଆଣିଥିଲେ ।

ଡ୍ୟାମ କାମ ଚାଲିଥାଏ । ନକୁଳ ଇତି ମଧ୍ୟରେ ବାବୁମାନଙ୍କ ସାଙ୍ଗରେ ବେଶ୍ ମିଳାମିଶା କରି ନିଜକୁ ଦଳର ଅନ୍ୟମାନଙ୍କ ଅପେକ୍ଷା ଟିକେ ଅଲଗା ଅଲଗା ଭାବିବାକୁ ଆରମ୍ଭ କଲାଣି । ତାର ମନେ ହେଲା ସେ ଲିଙ୍ଗରାଜ ନାୟକ ଭଳି ଦାଦନ କଣ୍ଟ୍ରାକ୍ଟର ହୋଇଯିବ । ତାଙ୍କ ଗାଁ ଆଖପାଖରୁ କୁଲି ଆଣି ଯୋଗାଇ ଦେବ । ବାବୁମାନଙ୍କ ସାଙ୍ଗରେ କଥାବାର୍ତ୍ତା କରି ସେ ବୁଝିଲା ଅମୃତସର ପାଖରେ ଗୋଟେ ବଡ଼ ନୂଆ ସହର ତିଆରି ହେବ । ସେଥିପାଇଁ ତିନି/ଚାରି ହଜାର ଲୋକ ଦରକାର । ତାଙ୍କ ଦାୟିତ୍ୱରେ ଥିବା ପେଟି କଣ୍ଟ୍ରାକ୍ଟର ମାଜିଥିଆବାବୁ ତାକୁ ଲୋକ ଆଣିବା ପାଇଁ କହିଲେ । ପ୍ରତି ଲୋକ ପିଛା ତାକୁ ହଜାରେ ଟଙ୍କା ମିଳିବ । ପୁରା ଦୁଇ ବର୍ଷ ପାଇଁ । ସମସ୍ତେ ଆସିବେ । ନକୁଳ ମୁଣ୍ଡରେ ତା ଦୋକାନ ଘର କଥା ଟାଇଁ ଟାଇଁ ହୋଇ ବାଜି ଉଠିଲା । ସେ ମନେ କଲା ଏହାହିଁ ସୁବର୍ଣ୍ଣ ସୁଯୋଗ । ଅନ୍ତତଃ ପଚାଶ ଲୋକ ଯୋଗାଡ଼ କରିପାରିଲେ ପଚାଶ ହଜାର ଟଙ୍କା ମିଳିଯିବ । ଏତେ ଟଙ୍କା ? ଜୀବନରେ ସେ କେବେ ଦେଖିବା ଦୂରେ ଥାଉ ଶୁଣିନି । ନକୁଳ ସ୍ଥିର କଲା ସେ ମାଜିଥିଆ ବାବୁଙ୍କ ସହ ମିଶି ଲୋକ

ଯୋଗାଇବ । ମାଲିଥିଆବାବୁଙ୍କୁ ନକୁଳ ଯାଇ କହିଲା ବାବୁ- ମୁଁ ପଚାଶ ଲୋକ ନେଇ ଆସିବି । ପ୍ରଥମେ ଆଡଭାନ୍ସ ଦରକାର । କାରଣ ଲୋକଙ୍କୁ ଚାରିଶହ ପାଞ୍ଚଶହ କରି ଟଙ୍କା ନଦେଲେ ଘରଛାଡ଼ି କେହି ବାହାରିବେ ନାହିଁ । ମାଜିଥିଆ ନକୁଳଙ୍କୁ ନେଇ ବଡ଼ ଠିକାଦାର ଚୋପ୍ରା ସାହେବଙ୍କ ସହ ଦେଖା କରାଇଦେଲା । ଚୋପ୍ରା କହିଲେ ତମେ ଟଙ୍କା ନେଇ ଠକି ଦେଲେ ଆମେ କ'ଣ କରିବୁ ? ନକୁଳ ହାତଯୋଡ଼ି କହିଲା ହଜୁର ମୁଁ କେତେ କଡ଼ାର ମୁଣ୍ଡ । ଏଡ଼େ କାମ କରିବାକୁ ଯାଇ ସାହାସ ହେବ ? ତଥାପି ଚୋପ୍ରା କହିଲେ ତୁମେ ଲୋକ ନ ଆଣିବା ପର୍ଯ୍ୟନ୍ତ ତୁମ ସ୍ତ୍ରୀ ଏଠି କାମ କରିବେ । ତୁମେ ଏକାଯାଇ ଲୋକ ଆଣିବ । ନକୁଳ ଭାବିଥିଲା ଚମ୍ପାକୁ ସାଙ୍ଗରେ ନେଇ ଯାଇ ଘରେ ଛାଡ଼ିଦେବ । କାରଣ ଆଉ ଚମ୍ପାର ଏଠି କାମ କରିବା ଦରକାର କ'ଣ ? ଥରେ ଲୋକ ଆଣି ପହଞ୍ଚାଇ ଦେଲେ ତା ଦୋକାନ ଘର ପାଇଁ ଜାଗା ଘର ସବୁ ସେଇ ଟଙ୍କାରେ ହୋଇଯିବ । କିନ୍ତୁ ଚୋପ୍ରା ସାହାବଙ୍କ କଥା ଶୁଣି ତା ମନଟା ଦୁକ୍ ଦୁକ୍ ହେଲା । ସେ ତା ପଲା ଘରକୁ ଆସି ଚମ୍ପା ସାଙ୍ଗରେ ଏବଂ ଆଉ ତିନି ଚାରିଜଣଙ୍କ ସାଙ୍ଗରେ କଥାବାର୍ତ୍ତା କଲା । ଲୋକ ଯୋଗାଡ଼ କରି ମାସକ ଭିତରେ ସେ ଫେରି ଆସିବ । ତାଙ୍କ ଦଳରେ ତାଙ୍କ ଗାଁରେ ପାଞ୍ଚୋଟି ପରିବାର ଆସିଥିଲେ । ସେମାନଙ୍କ ଦାୟିତ୍ୱରେ ଚମ୍ପାକୁ ରଖି ନକୁଳ ଲୋକ ଯୋଗାଡ଼ କରିବାପାଇଁ ଗାଁକୁ ଗଲା ।

ନକୁଳ ଚୋପ୍ରା ସାହେବଙ୍କ ଠାରୁ କୋଡ଼ିଏ ହଜାର ଟଙ୍କା ନେଇ ଗାଁକୁ ଗଲା । କୋଡ଼ିଏ ହଜାର ଟଙ୍କା ବଦଳରେ ତା ସ୍ତ୍ରୀ ଚମ୍ପା ବନ୍ଧା ପଡ଼ିଲା ଚୋପ୍ରା ସାହେବଙ୍କ ନିକଟରେ । ନକୁଳର ଏଇ ମାତବରି ଓ ହଠାତ୍ ଭାଗ୍ୟୋଦୟରେ ଅନେକ ଇର୍ଷାନ୍ୱିତ ହୋଇ ପଡ଼ିଲେ । ନକୁଳର କାହାରିକୁ ପରଖା ନାହିଁ । ନକୁଳ ଯିବାର ଦୁଇ/ତିନି ମାସ ହେଲାଣି । ଚିଠି ପତ୍ର କିଛି ନାହିଁ । ଏଣେ ପ୍ରତି ହପ୍ତାରେ ମଜୁରୀ ଠିକ୍ ଭାବେ ମିଳୁନି । ଦିହପା ଖରାପ ହୋଇ ଚାରି/ପାଞ୍ଚ ଜଣଙ୍କ ଅବସ୍ଥା କାହିଲ ହେଲାଣି । ଉଷୁଦ ନାହିଁ କି ଡ଼ାକ୍ତର ନାହିଁ । ସମସ୍ତଙ୍କ ରାଗ ନକୁଳ ଉପରେ । ନକୁଳକୁ ନ ପାଇ ଚମ୍ପା ଉପରେ । ବିଚାରୀ ଚମ୍ପା କରିବ କ'ଣ ? ଗେରସ୍ତ ତାକୁ ଛାଡ଼ି ଦେଇ ଯାଇଛି । ସମସ୍ତଙ୍କ ଚାପରେ ଦିନେ ଡରି ଡରି ଚମ୍ପା ମାଜିଥିଆ ବାବୁ ପାଖକୁ ଗଲା । ମାଜିଥିଆକୁ ସବୁ କହିଲା । ମାଜିଥିଆ ଚମ୍ପାକୁ ଏତେ ପାଖରୁ କେବେ ନିରିକ୍ଷଣ କରିନଥିଲା । ସେଦିନ ଚମ୍ପାକୁ ଦେଖି ମାଜିଥିଆ ଆଖି ଉପରକୁ ହେଇଗଲା । ଆରେ ଏତେ ସୁନ୍ଦରୀ ମାଇକିନା ଯା ଭିତରେ ଥିଲା । ଏତେ ଦିନ ଯାଏ ସେ ଦେଖି ନଥିଲା । ଚମ୍ପା ପାଖରୁ ସବୁ ଶୁଣି ମାଜିଥିଆ ତାକୁ ସାଙ୍ଗରେ ନେଇ ଚୋପ୍ରା ସାହେବଙ୍କ କ୍ୟାମ୍ପକୁ ଗଲା । ଚୋପ୍ରା ସାହେବ ଚମ୍ପାକୁ ଦେଖି ମଧ୍ୟ ଖୁସ୍ । ସାଙ୍ଗେ ସାଙ୍ଗେ ଡ଼ାକ୍ତର ଓଷଦ ସବୁ ପଠାଇ ଦିଆଗଲା । ଚମ୍ପା ଭାରି ଖୁସି । ତା କଥାରେ ସମସ୍ତେ ମଜୁରୀ ପାଇଗଲେ । ସେ ନିଜେ ମଧ୍ୟ ପାଇଲା । ମାଜିଥିଆ ଚମ୍ପାକୁ କହିଲା ତୋର ଯାହା ଦରକାର ଚୋପ୍ରା ସାହାବଙ୍କୁ କହିବୁ ।

କିଛି ଦିନ ବାଦ୍ ଦିନେ ସଂଧ୍ୟାରେ ମାଳିଥିଆ ଆସି ଚମ୍ପାକୁ ଚୋପ୍ରା ସାହାବ ଡାକୁଛନ୍ତି ବୋଲି କହି ସାଙ୍ଗରେ ନେଇଗଲା । ଚମ୍ପା ଚୋପ୍ରା ସାହାବଙ୍କ କଥା ଶୁଣି କିଛି ଆପତ୍ତି ନକରି ଗଲା । ଚୋପ୍ରା ସାହାବଙ୍କ କ୍ୟାମ୍ପରେ ପହଞ୍ଚିଲା ପରେ ତାକୁ ମାଳିଥିଆ ଭଲ ଶାଢ଼ୀ ଦେଇ କହିଲା ଭଲ କରି ସାବୁନ୍‌ରେ ମୁହଁ ଧୋଇ ମୁଣ୍ଡ କୁଣ୍ଡାଇ ଶାଢ଼ୀଟୀ ପିନ୍ଧି ଦେ । ବଡ଼ ଇଞ୍ଜିନିୟର ସାହେବ ଆସୁଛନ୍ତି । ତାଙ୍କୁ ଖାଇବା ପିଇବା କଥା ତୁ ଟିକେ ବୁଝିବୁ । ଚମ୍ପା କିଛି ବୁଝି ନପାରି ମାଳିଥିଆ ମୁହଁକୁ ବଲ ବଲ କରି ଚାହିଁଲା । "ଆଲୋ ଏମିତି ଚାହଁଚୁ କ'ଣ ? ଯାହା କହିଲି ତା କର୍ ।" ଚମ୍ପାର ଅନ୍ୟ ଗତି କିଛି ନଥିଲା । ସେଦିନ ରାତିରେ ଚମ୍ପା ଆଉ ତା ପଲାକୁ ଫେରିନି । ଇଂଜିନିୟର ବାବୁ ରାତି ସାରା ତାର ପୁଙ୍ଗୁଲା ଦେହଟାକୁ ନେଇ ବିଭିନ୍ନ ଖେଳ ଖେଳିଲେ । ଦିନକ ପାଇଁ ଇନ୍ସପେକ୍ସନରେ ଆସିଥିବା ଇଂଜିନିୟର ବାବୁ ସେଇଠି ସାତ ଦିନ ରହିଗଲେ । ଆଉ ସାତ ଦିନ ଯାକ ଚମ୍ପା ସେଇଠି ରହିଗଲା । ସେ ଦିନ ଗୁଡ଼ାକର ଅନୁଭୂତି ଚମ୍ପାର କୁଆରିଆ ଯୌବନର ଜ୍ୱାଳାକୁ ଶାନ୍ତ କରି ଦେଇଥିଲା । ଚମ୍ପାର ପ୍ରଥମରୁ ଯେଉଁ ଅସ୍ୱସ୍ତି ହୋଇଥିଲା ତା କ୍ରମେ କଟିଗଲା । ସେଇ ଦିନଠାରୁ ଚମ୍ପା ଆଉ କାମ କରିନି । ତା' ଘରେ ବସି ତା ମଜୁରୀ ପାଏ । ଇଂଜିନିୟର ବାବୁ, ଚୋପ୍ରା ସାହାବ ଓ ଶେଷରେ ମାଳିଥିଆ ଚମ୍ପାକୁ ନେଇ ଫୁର୍ତ୍ତି କଲେ । ଏଣେ କିନ୍ତୁ ତାଙ୍କ ଦଳର ଲୋକଙ୍କ ଅବସ୍ଥା ଦିନକୁ ଦିନ ଖରାପ୍ ହେବାକୁ ଲାଗିଲା । ଅଧିକାଂଶ ଜ୍ୱରରେ ପଡ଼ିଲେ । ସେଇ ଜର ଦିହରେ କାମ କରିବାକୁ ହୁଏ । ସମସ୍ତଙ୍କ ରାଗ ନକୁଳ ଉପରେ । ନକୁଳ ଆସୁନଥିବାରୁ ତା ବଦଳରେ ସବୁ ରାଗ ପଡୁଥିଲା ଚମ୍ପା ଉପର । ପରେ ସମସ୍ତେ ବୁଝିଲେ ନକୁଳ ଚମ୍ପାକୁ ସାହାବଙ୍କୁ ବିକି ଦେଇ ଯାଇଛି । ଦଳରେ ଯେତେକ ଟୋକା ଥିଲେ ଅବସ୍ଥା ଅସହ୍ୟ ହେବାରୁ ସେମାନଙ୍କ ମଧ୍ୟରୁ ଜଣେ ଦିନେ ଲୁଚି କରି କ୍ୟାମ୍ପ ଛାଡ଼ି ପଳାଇଲା । ସେହିଦିନ ଠାରୁ ପହରା କଡ଼ାକଡ଼ି କରି ଦିଆଗଲା । ଆଉ ଯେଉଁମାନେ ପଳେଇ ଯିବେ ବୋଲି ଭାବୁଥିଲେ ସେମାନେ ଆଉ ସେ ସୁଯୋଗ ପାଇଲେ ନାହିଁ ।

ଚମ୍ପା ଖାଇ ପିଇ ସୁଖରେ ରହିଥାଏ । ହେଲେ ତା ମନ ଭିତରେ ସ୍ୱାମୀ ନକୁଳ ଏବେ ମଧ୍ୟ ବସା ବାନ୍ଧି ରହିଛି । ତା'ର ମନେ ହୁଏ ଏ ସୁଖ ଆଉ ଗାଁରେ ଶାଶୁ ପାଖରୁ ମାଡ଼-ଗାଳି ସାଙ୍ଗକୁ ନକୁଳର ସୁଆଗିଆ ଡାକର ସୁଖ ଭିତରେ କେତେ ଫରକ । ଆଜି ସମସ୍ତଙ୍କର ସେ ଟାହି ଟାପରା ସହି ରହିଛି । କରିବ ବା କଣ ? ଗେରସ୍ତ ଛାଡ଼ି ଚାଲିଗଲା ପରେ ତାର ଆଉ କିଏ ଅଛି ? ଗାଁରୁ ଯେଉଁମାନେ ଆସିଛନ୍ତି ସେମାନେ ସମସ୍ତେ ତାର ସେଇ ଦିହଟା ଉପରେ ଆଖିଲଗାଇଛନ୍ତି । ମଝି ନଈରେ ଥାଇ ବି ପଟେ କୁମ୍ଭୀର । ଯାହାର ବଳ ଅଧିକା ସେ ତା ଖାଦ୍ୟ ନେଲା । ସେଠି ଖାଦ୍ୟର ଅଭିରୁଚି କିଛି ନାହିଁ । ଖାଦକ ହିଁ ମାଲିକ । ତେଣୁ କିଛିତି ରାତିରେ ମାଳିଥିଆ ଆସି ତା ପାଖରେ ଦି'ତିନି ଘଣ୍ଟା କଟାଇ ଯାଏ । ତାର ଉପାୟ କିଛି ନାହିଁ । ପ୍ରତିବାଦର ଆବଶ୍ୟକତା ମଧ୍ୟ ସେ ଅନୁଭବ କରେ ନାହିଁ । କାରଣ ତାର ଯୌବନ ମାଳିଥିଆ , ଚୋପ୍ରା ବା

ଇଂଜିନିୟରଙ୍କ ସଙ୍ଗଲାଭ ପାଇଁ ବିକଳ ହୋଇ ଚାହିଁ ରହିଥାଏ ।

ସେଦିନ ତାଙ୍କର ସେଇ ଛୋଟ ପଡାରେ ଅଘଟଣ ଘଟି ଗଲା । ନବଘନ ଚୋସ୍ତ ଯୁଆନ୍ ଟୋକା । କ୍ୟାମ୍ପରେ ଅତ୍ୟାଚାର ସହି ପାରିଲାନି । ପ୍ରତିଦିନ ହାଡ଼ଭଙ୍ଗା ଖଟଣି । ତେର/ଚଉଦ ଘଣ୍ଟା କାମ । ରାତିରେ ଦିନ ଭଳି ଲାଇଟ୍ ଜାଳି କାମ ହେଉଛି । ଯିଏ ଯିବାକୁ ଅମଙ୍ଗ ହେଉଛି ତାକୁ ଠିକାଦାରର ଗୁଣ୍ଡାମାନେ ଆସି ମାଡ଼ ମାରି ମାରି ବେଦମ କରି ଦେଉଛନ୍ତି । ନବଘନ ପ୍ରତିବାଦ କରି ଦି ଦି ଥର ଗୁଣ୍ଡାଙ୍କର ଶିକାର ହୋଇଛି । ନକୁଳଙ୍କ ଗାଁର ନବଘନ । ଘରେ ଦିଟା ଭଉଣୀ । ବାହାହେବ ବୟସ ବୟସ ହେଲାଣି ଦିହିଙ୍କର । ବାପର ସଂପତ୍ତି ବୋଇଲେ ଏକରେ ଜମି । ତା ସାଙ୍ଗରେ କିଛି ଜମି ଭାଗ ଧରିଛି । ସଂସାର ଚଳିଯାଏ । ନବଘନ ବଡ଼ପୁଅ । ଦୁଇଭଉଣୀଙ୍କ ତଳେ ଆଉ ଦିଟା ପୁଅ । ସାନ, ନବଘନ ଭାରି ଭଲ ପିଲା । ଗାଁରେ ସମସ୍ତେ ନବଘନକୁ ଭଲ ପା'ନ୍ତି । ନବଘନ ପ୍ରଥମେ ଆସିବାକୁ ମନା କରିଥିଲା । ହେଲେ ଏ ସନ ବର୍ଷା ନଥିବାକୁ ଗୋଟେ ଭଉଣୀକୁ ଉଠେଇ ଦେବାପାଇଁ ତା'ର ଇଚ୍ଛା । ସେଥିପାଇଁ ଲୋଭରେ ନବଘନ ଏଠିକୁ ଆସିଲା । କିନ୍ତୁ ଏଠି ଯେଉଁ ଅବସ୍ଥା ତା'ର ହଂସା ଉଡ଼ିଗଲାଣି । ଶାନ୍ତ ଶିଶୁ ନବଘନର ସବୁ ରାଗ ନକୁଳ ଉପରେ ପଡ଼ିଲା । ଥରେ ଗାଁକୁ ଯାଏ । ତା' ପରେ ଦେଖିବୁରେ ପୁଅ ମୁଁ କଣ କରିବି । କେବଳ ନବଘନ ନୁହେଁ ସେଇ ପଡ଼ାରେ ଥିବା ତାଙ୍କ ଗାଁ ଆଉ ଗୁମାର ଯେଉଁ ବତିଶ ଜଣ ଥିଲେ ସେମାନଙ୍କ ମଧ୍ୟରୁ ନକୁଳ ମୋଟା ଟଙ୍କା ନେଇ ପଳେଇଛି । ବଇଁଶୀ ଲୁଚିକରି ପଳାଇଲା । ସମସ୍ତେ ଆଶା ରଖିଥିଲେ ବଇଁଶୀ ଯାଇ ତାଙ୍କ ଦୁଃଖ କଥା କହି ସେମାନଙ୍କୁ ଉଦ୍ଧାର କରିବ । କିନ୍ତୁ କାହିଁ ମାସେ ଗଲା-ଦି'ମାସ ଗଲା କାହାରି ଦେଖା ନାହିଁ । କିମ୍ବା ତାଙ୍କ ଦୁଃଖର ଶେଷ ନାହିଁ । ଶେଷରେ ନବଘନ ଆଣ୍ଟ ଭିଡ଼ିଲା ଚାଲିଯିବ ବୋଲି । ରାତି ପ୍ରାୟ ଦୁଇଟା ବେଳେ ନବଘନ ଛପି ଛପି ପ୍ରଥମ ତାର ବାଡ଼ ଡେଇଁ ପଡ଼ିଲା । ଆଉ ଗୋଟାଏ ବାଡ଼ ଡେଇଁ ପାରିଲେ ସେପଟେ ଛୋଟ ନାଳ ପହଁରି ପଳାଇବ । ଦ୍ୱିତୀୟ ବାଡ଼ ଡେଇଁ ପଡ଼ିବା ବେଳକୁ ଠିକାଦାର ପହରାବାଲାର ଆଖି ପଡ଼ିଗଲା । ବଂଧୁକ ଉଞ୍ଚାଇ କୁକୁରକୁ ଧରି ସେ ମାଡ଼ି ଲମ୍ଫ ଦେଲା । କିନ୍ତୁ ତାର ଭାଗ୍ୟ ଖରାପ । ପହରା ବାଲା ଗୁଳି କଲା । ଗୁଳି ଯାଇ ଛାତି ଫଟାଇ ଦେଲା । ବିକଟ ଚିତ୍କାର କରି ନବଘନ ସେଇଠି ଟଳି ପଡ଼ିଲା । ତା'ର ଚିତ୍କାରରେ ସାରା ବନ୍ଧ ଅଂଚଳ କମ୍ପି ଉଠିଲା ।

ନବଘନର ନିଥର ଦେହଟା ନାଳ ପାଣିରେ ବୁଡ଼ି ଗଲା । ବା'କୁ ସାହାଯ୍ୟ ଭଉଣୀକୁ ଉଠେଇ ଦେବାପାଇଁ ଅଜସ୍ର ଟଙ୍କା ଲୋଭରେ ଆସିଥିବା ନବଘନର ଆତ୍ମା ସେଇ ନାଳର ପାଣି ଭିତରେ ବାହୁନି ବାହୁନି କାନ୍ଦିଲା । ସତେ ଯେପରି ତା ବାପକୁ କହୁଛି ବା'ଲୋ ଏ ଜନ୍ମରେ ଆଉ ନୁହଁ, ଆର ଜନ୍ମରେ ତୋର ପୁଅ ହେଲେ ଏ ଭୁଲ କରିବି ନି ।

ନବଘନର ମୃତ୍ୟୁ ସମଗ୍ର ବନ୍ଧ ଅଂଚଳରେ ବ୍ୟାପିଗଲା । ଚୋପ୍ରା ଚେଷ୍ଟା କରିଥିଲା

କଥାଟାକୁ ଚାପି ଦେବ ବୋଲି । କିନ୍ତୁ ତା ଭାଗ୍ୟ ଖରାପ । ବଇଁଶୀ ଗାଁକୁ ଫେରିଯାଇ ଏମ୍.ଏଲ୍. ଏ ବାବୁଙ୍କୁ ସବୁ କଥା କହିଲା । ଆଖପାଖ ଗାଁର ସମସ୍ତେ ଏମ୍.ଏଲ୍.ଏ ବାବୁଙ୍କ ଘର ଆଗରେ ବସିଲେ । ଏମ୍.ଏଲ୍.ଏ ଶ୍ରମମନ୍ତ୍ରୀଙ୍କୁ କହି ପ୍ରତିକାର ବ୍ୟବସ୍ଥା ଆରମ୍ଭ କଲେ । ନବଘନର ମୃତ୍ୟୁ କିନ୍ତୁ ବିଫଳ ହେଲା ନାହିଁ । ଚୋପ୍ରା ସମସ୍ତଙ୍କୁ ପୁରା ଟଙ୍କା ଦେଇ ପୋଲିସ୍ ଆଗରେ ନବଘନ ମୃତ୍ୟୁ ସଂପର୍କରେ କିଛି ନକହିବା ପାଇଁ ପ୍ରବର୍ତ୍ତାଇଲା । ମାତ୍ର ଠିକ୍ ସେତିକିବେଳେ ଓଡ଼ିଶାରୁ ପୋଲିସ୍ ଦଳ ପଞ୍ଜାବ ପୋଲିସ୍ ସାହାଯ୍ୟରେ ଘଟଣା ସ୍ଥଳରେ ପହଞ୍ଚିଲେ । ସମସ୍ତେ ଉଦ୍ଧାର ପାଇଲେ । ଚୋପ୍ରା ଗିରଫ୍ ହେଲା । ଲୁଧିଆନାରେ ଧରଣୀ ପ୍ରଧାନ ଆଉ ତା ସାଙ୍ଗମାନଙ୍କୁ ଓଡ଼ିଶା ପୋଲିସ୍ ମଧ୍ୟ ଉଦ୍ଧାର କଲା ।

ସମସ୍ତେ ଟ୍ରେନ୍ ଧରି ଦିଲ୍ଲୀ ପହଞ୍ଚି ନିଜାମୁଦ୍ଦିନ ଷ୍ଟେସନ୍‌ରେ ଏକାଠି ହେଲେ । ବଇଁଶୀ ପାଖରୁ ଚମ୍ପା ସେଇଠି ଖବର ପାଇଲା ତା ଗିରସ୍ତ ଆଉ ଗୋଟେ ବାହାହେବା ପାଇଁ ଠିକ୍ କରିଥିଲା । ବଇଁଶୀ ଗାଁରେ ପହଞ୍ଚି ଗାଁ ବାଲାଙ୍କୁ ସବୁ କହିବା ପରେ ସମସ୍ତେ ନକୁଳକୁ ପରସ୍ତେ ମାଡ଼ ଚଢ଼ାଇଛନ୍ତି । ନକୁଳ ଭୟରେ ଗାଁ ଛାଡ଼ି ପଳାଇଛି । ଚମ୍ପା ସବୁ ଶୁଣିଲା । କିଛି କହିଲାନି । ବଇଁଶୀ ଚମ୍ପା ପାଖରେ ବସି କହିଲା- ଚମ୍ପା ଲୋ ନକୁଳ ତ ଆଉ ଗୋଟେ ମାଇକିନା ଆଣିବ । ତୁ ଯଦି ମନା ନକରୁ ମୁଁ ତୋତେ ରଖି ନେବି ।

ଚମ୍ପା ଅନ୍ୟ କଥା ଭାବୁଛି । ସେ ଘରୁ ଗୋଡ଼ କାଢ଼ିଲା ପର୍ଯ୍ୟନ୍ତ ଶାଶୁ ତାକୁ ବାନ୍ଝି, କହି ଗୋଇଠା, ବିଧା ମାରିଛି । ସେ ଗାଁକୁ ଫେରି ନଯାଇ ପଞ୍ଚାୟତ ବସାଇବ । ଭରା ସଭାରେ ସେ କହିବ ଯେ ସେ ବାଞ୍ଝ ନୁହେଁ । ତାର ପ୍ରମାଣ ସେ ନେଇ ଆସିଛି ନିଜ ଶରୀରରେ । ସେ ତିନି ମାସର ଗର୍ଭବତୀ । ଏ ଭ୍ରୂଣ ତା' ପେଟରେ ମାଜିଥିଆ, ଚୋପ୍ରା, କି ଇଂଜିନିୟରର ସେ ଜାଣେନା । କିନ୍ତୁ ଏତିକି ଜାଣେ ସେ ବାନ୍ଝ ନୁହେଁ । ତାକୁ ଅଖାଦ୍ୟ ଭଳି ନକୁଳ ଫିଙ୍ଗି ଦେଇ ଆସିଥିଲା ଅଜଣା ଅଶୁଣା ରାଜ୍ୟରେ ତାର ବିଚାର କିଏ କରିବ ? ତାକୁ ନେଇ ଯେଉଁମାନେ ଫୁର୍ତ୍ତି କଲେ ସେଥିରେ ସେ କ'ଣ କରି ପାରିଥାନ୍ତା ? ତାର ଦୋଷ କଣ ?

ଗାଡ଼ି ଚାଲିଛି । ସମୟ ଅତିକ୍ରାନ୍ତ ହୋଇ ଯାଉଛି । ତିନି ଦିନ ତିନି ରାତି ପରେ ଯେତେବେଳେ ତାଙ୍କ ଗାଁ ପାଖ ହୋଇ ଆସିଲା ସାରା ଡବାଟାର ଲୋକ ଆନନ୍ଦରେ ଚିତ୍କାର କରି ଉଠିଲେ । ଶାଶୁ ଆଉ ନକୁଳ କଥା ଭାବି ଚମ୍ପାର ଦିହଟା କମ୍ପି ଉଠିଲା । ଚମ୍ପା ମନେ ମନେ ଭାବିଲା ତା ଶାଶୁକୁ କହିବ ତମ ବଉଁଶରେ କେହି ଜନ୍ମ ହେବେ ନାହିଁ । ମୁଁ ତମ ବଉଁଶ ରକ୍ଷା କରିବାପାଇଁ ପେଟ ଭରି ଆସିଛି । କାରଣ ଏତେ ଦିନ ଧରି ଯେଉଁ ଅପବାଦ ମୋତେ ଦେଇ ଆସୁଥିଲ ଏବେ ସେଇ ଅପବାଦ ତୁମ ପୁଅକୁ ଦିଅ । ମୁଁ ବାନ୍ଝ ନୁହେଁ ନକୁଳ ନପୁଂସକ । ହଠାତ୍ ଗାଡ଼ିଟା ଥରି ଉଠିଲା ଏବଂ ତା ସଙ୍ଗେ ସଙ୍ଗେ ଚମ୍ପାର ପେଟ ଭିତରେ ଥରି ଉଠିଲା ଆଉ ଏକ ବିପନ୍ନ ଅସ୍ତିତ୍ୱ । ▪ ■

# ମୁଠାଏ ଦୀର୍ଘଶ୍ୱାସ

କ୍ଷୀରୋଦ ଦାସ

ରାତିର ନିସ୍ତବ୍ଧ ପ୍ରହରରେ ଚଟାଣରେ କାଚ ଗ୍ଲାସ୍‌ଟିଏ ପଡ଼ି ଭାଙ୍ଗିଗଲେ ଯେପରି ଶବ୍ଦ ହୁଏ, ଟେଲିଫୋନ୍‌ର ଘଣ୍ଟି ଘର ଭିତରର ଶାନ୍ତ ନୀରବତାକୁ ସେହିପରି ଖଣ୍ଡ ବିଖଣ୍ଡିତ କରି ପକାଇଲା । ଚମକି ପଡ଼ି ସବ୍ୟସାଚୀ ଫେରି ଆସିଲେ ଚିନ୍ତାରାଜ୍ୟରୁ । ମୁହଁରେ ତାଙ୍କର ଫୁଟି ଉଠିଲା ବିରକ୍ତିର ଭାବ । ମଧ୍ୟରାତ୍ରିର ଏକାନ୍ତ ନିଜସ୍ୱ ମୁହୂର୍ତ୍ତଗୁଡ଼ା ହାତଛଡ଼ା ହୋଇଗଲେ ତାଙ୍କୁ ଭାରି ବାଧେ । ସାମାନ୍ୟ ଶବ୍ଦକୁ ସେ ସହ୍ୟ କରିପାରନ୍ତିନି ଏଭଳି ସମୟରେ । ବିକ୍ଷିପ୍ତ ହୋଇଯାଆନ୍ତି ତାଙ୍କ ସାବଲୀଳ ଚିନ୍ତାଧାରା ସବୁ । ଖାସ୍ ସେଇଥିପାଇଁ ଘର ଓ ବାହାରର ପରିବେଶ ନିଶୂନ୍ ହୋଇଗଲା ପରେ ହିଁ ସେ ଆସନ୍ତି ତାଙ୍କ ପଢ଼ା ଟେବୁଲ୍ ଓ ଚେୟାର ପାଖକୁ । ରାତି ଏଗାରଟା ପରେ । ତା' ପୂର୍ବରୁ କେବେ ନୁହେଁ ।

ଅବିରାମ ଭାବେ ବାଜିଚାଲିଛି ଟେଲିଫୋନ୍‌ର ଘଣ୍ଟି । ଯେପରି ସେ ଘଣ୍ଟି ପ୍ରତିଜ୍ଞାବଦ୍ଧ ତାଙ୍କୁ ଚିନ୍ତାଚ୍ୟୁତ କରିବାକୁ ! ଅନେକ ଅନିଚ୍ଛାକୁ ସାଙ୍ଗରେ ଧରି ସବ୍ୟସାଚୀ ଉଠିଲେ, ରିସିଭର୍ ଉଠାଇଲେ ଏବଂ ଜବାବ ଦେଲେ- ହାଲୋ...

"ହାଲୋ" !- ସେ ପାଖରୁ ଭାସି ଆସିଲା ଏକ ଓଜନିଆ ଆଦ୍ର ନାରୀକଣ୍ଠ । ସେ କଣ୍ଠରେ ସତେ ଅବା ଭରି ରହିଥିଲା ଦୁନିଆଯାକର ଦୁଃଖ ! ତାହା ଯେପରି ଭିଜିଯାଇଥିଲା ଲୁହର ସାଗରରେ !

"ହାଲୋ ! କିଏ କହୁଛନ୍ତି ? ହାଲେ... କାହାକୁ ଖୋଜୁଛନ୍ତି ?ସବ୍ୟସାଚୀ ବିବ୍ରତ ସ୍ୱରରେ ପଚାରିଲେ- ହାଲୋ... ହାଲୋ... ନା, କଟିଗଲା ବୋଧହୁଏ ।" - ସେ ରିସିଭର ରଖିଦେଇ ପାଣି ଗ୍ଲାସଟିଏ ପିଇଦେଇ ଫେରି ଆସିଲେ ପଢ଼ା ଟେବୁଲ୍‌କୁ !

କ୍ରିଂ ... କ୍ରିଂ... କ୍ରିଂ ... କ୍ରିଂ

'ଧେତ୍ !' ମନର ଅସୀମ ବିରକ୍ତିକୁ ଏହିପରି ପ୍ରକାଶ କରି ସବ୍ୟସାଚୀ ଉଠିଯାଇ ରିସିଭର୍ ଉଠାଇଲେ- "ହାଲୋ !"

ଅନନ୍ତ ନୀରବତା ବ୍ୟତୀତ ସେପାଖରୁ ଆଉ କିଛି ଶୁଭୁନଥିଲା ।

"ଆରେ ବାବା, କିଏ କହୁଛ କହୁନା କାଇଁକି ? କାହାକୁ ଖୋଜୁଛ ? ହାଲୋ ?

ହାଲୋ ?- କଠୋର କଣ୍ଠରେ ପଚାରିଲେ ।

'ଶୋଭନ୍, ଭୁଲିଗଲ ?' - ସେ ପାଖରୁ ଶୁଭିଲା ଜଣେ ଭଦ୍ର ମହିଳାଙ୍କର ଦୁଃଖ ବିଜଡ଼ିତ ସ୍ୱର ।

"କିଏ ? ଶୋଭନ୍ !" - ଆଶ୍ଚର୍ଯ୍ୟମିଶା କଣ୍ଠରେ ପଚାରିଲେ ସବ୍ୟସାଚୀ- "ଏଠି ଶୋଭନ୍ ବୋଲି କେହି ନାହାନ୍ତି । ଆପଣ କେତେ ନମ୍ବର ଖୋଜୁଛନ୍ତି ?

"ଏଇ ନମ୍ବର, ଯେଉଁ ନମ୍ବରରେ ତମେ ଫୋନ୍ ଧରିଛ ଶୋଭନ୍ ! ସତରେ ତମ ସୁଜିଙ୍କୁ ତମେ ଭୁଲିଗଲ ଶୋଭନ୍ ?"

ସବ୍ୟସାଚୀ ଅତିଷ୍ଠ ହୋଇପଡ଼ି କହିଲେ- ଦେଖନ୍ତୁ ମ୍ୟାଡାମ୍, ଆପଣଙ୍କୁ ବୋଧହୁଏ କିଏ ଭୁଲ୍ ନମ୍ବର ଦେଇଛି । ଏଠି ଶୋଭନ୍ କେହି ନାହାନ୍ତି । ଏ ନମ୍ବର ମୋର, ଦୀର୍ଘ ସାତବର୍ଷର । ମୁଁ....

"ପ୍ଲିଜ୍, ଆଉ ମିଛି କୁହନି । ତମେ ତ କେବେ ମିଛ କୁହନି ଶୋଭନ୍ ! ଆଜି କେଉଁ ପରିସ୍ଥିତିରେ ପଡ଼ି ମିଛ କହୁଛ ? ସେ ପାଖରୁ କହିଲେ ମହିଳା ।

"ଦେଖନ୍ତୁ... ଆପଣ...

-ତମେ ମତେ ଆପଣ ବୋଲି କେବେଠାରୁ ସମ୍ବୋଧନ କଲଣି ଶୋଭନ୍ ? 'ତମେ'ରୁ 'ଆପଣ'କୁ କେତେ ଶୀଘ୍ର ଓହ୍ଲାଇଲ ? ପ୍ଲିଜ୍, ତମକୁ ଜଗନ୍ନାଥଙ୍କ ରାଣ, କୋଟି କୋଟି ଦେବତାଙ୍କ ରାଣ, ଫୋନ୍ କାଟ ନାହିଁ । ସତ କହୁଛି, ତମ ପ୍ରତି ମୋର କିଛି ଅଭିଯୋଗ ନାଇଁ, ନାଇଁ ଆପତ୍ତି କି ରାଗରୁଷା । ତମକୁ ଅନୁରୋଧ, ଖାଲି ଟିକେ ମୋ କଥା ଶୁଣ ! ବାସ୍, ମୋର ଆଉ ଭିଛି ଦରକାର ନାହିଁ । ସେ ପାଖରେ ନାରୀକଣ୍ଠଟି ଧୀରେ ଧୀରେ କୋହାଚ୍ଛନ୍ନ ହୋଇଯାଉଥିଲା ।

ସବ୍ୟସାଚୀ କିଛି ଉତ୍ତର ଦେଲେନି । ଉତ୍ତର ଦେବା ପାଇଁ ତାଙ୍କ ପାଟିରେ କିଛି ଭାଷା ଗଚ୍ଛିତ ନଥିଲା । ତାଙ୍କ ନୀରବତାକୁ ଅନୁଭବ କରି ନାରୀଟି ସାମାନ୍ୟ ଉତ୍ସାହିତ ସ୍ୱରରେ ପଚାରିଲା- "ଶୁଣିବ ଟି !"

ସବ୍ୟସାଚୀ ଚାହିଁଲେ କାନ୍ଥ ଘଣ୍ଟାକୁ । ରାତି ବାରଟା କୋଡ଼ିଏ । ବାହାରେ ନିଶା ଗର୍ଜୁଥିଲା । ମନ ଭିତରେ ନୂଆ ଗଳ୍ପଟିର ଭ୍ରୁଣ ଦାନାବାନ୍ଧି ଆସୁଥିଲା । ଗଭୀର ଚିନ୍ତାସବୁ ଇତିମଧ୍ୟରେ ତାଙ୍କ ଅସାବଧାନତାର ସୁଯୋଗ ନେଇ ଖପ୍‌ଖାପ୍ ଡେଇଁ ପକାଇଲେଣି କୁଆଡ଼େ । ଗଲା, ଆଜି ରାତିଟା ପୂରା ବେକାର । ମଣିଷ ପଡ଼ିଲାଣି ଯାଇ ଅଠାକାଠିରେ । ମହିଳାଟିର ଏକା ଜିଦ୍ । ତାଙ୍କୁ ଶୋଭନ୍ ବୋଲି ଭାବି କିଛି କହିବାକୁ ଚାହୁଁଛି, ସେ ଶୋଭନ୍ ନହେଲେ ବି କିଛି ସମୟ ପାଇଁ ଶୋଭନ୍ ହୋଇ ଶୁଣିଦେଲେ କ୍ଷତି କ'ଣ ? ତାଙ୍କ ମନରେ ନବଯୁବକଟିଏ ପରି ଏକ କୌତୁହଳ ସୃଷ୍ଟି ହୋଇଗଲା । ତତ୍‌ସହିତ ଅଜବ ଏକ ଖିଆଲି ରୋମାଞ୍ଚ ଖେଳିଗଲା

ତାଙ୍କ ସମଗ୍ର ଶରୀରରେ। ଅତଏବ ସେ ମାନସିକ ଭାବେ ପ୍ରସ୍ତୁତ ହୋଇଗଲେ ଅଧଘଣ୍ଟା ପାଇଁ ଶୋଭନ୍ ହେବାକୁ ଏବଂ କଣ୍ଠରେ ଯଥାସମ୍ଭବ କୋମଳତା ବୋଳି କହିଲେ- "ଠିକ୍ ଅଛି, ମୁଁ ଶୁଣିବି । ଯାହା କରିବାର ଅଛି କୁହ ।"

ଗୋଟାଏ ଦୀର୍ଘଶ୍ୱାସ। ମହଣ ମହଣ ଯନ୍ତ୍ରଣାକୁ ବୋହି ଆଣୁଥିବା ସେ ଦୀର୍ଘଶ୍ୱାସ ଏତେ ଉତପ୍ତ, ଏତେ ରିକ୍ତ, ଏତେ ରକ୍ତାକ୍ତ ଯେ ବେଶ୍ କିଛି ସମୟ ସ୍ତମ୍ଭୀଭୂତ ହୋଇଗଲେ ସବ୍ୟସାଚୀ । ପରେ ପରେ ଶୁଭିଗଲା ସୁଁ ସୁଁ କାନ୍ଦଣା । ନା କାନ୍ଦ ନୁହେଁ, ଛାତିକୁ ଫଟେଇ ଦେବା ପରି ଏକ କରୁଣ ନିଃସଙ୍ଗ ବିଳାପ । ସେ କାନ୍ଦର ତୀବ୍ରତା ଏତେ ପ୍ରଖର, ଏତେ ମର୍ମନ୍ତୁଦ, ସତେକି ଛିନ୍‌ଭିନ୍ କରି ପକାଇବ ପୃଥିବୀକୁ, ଗଛପତ୍ରକୁ, ଜଳସ୍ଥଳ ଆକାଶକୁ !

"କାନ୍ଦନା, ଦୟାକରି କାନ୍ଦନା... ନାରୀମାନଙ୍କ କାନ୍ଦ ମୁଁ ସହ୍ୟ କରିପାରନା ଜମା । ପ୍ଲିଜ୍... ।" ଆବେଗରେ କହି ପକାଇଲେ ସବ୍ୟସାଚୀ ।

ଆଶ୍ଚର୍ଯ୍ୟ ! କଇଁ କଇଁ କାନ୍ଦ ଗୋଟିଏ ମୁହୂର୍ତ୍ତରେ ରୂପାନ୍ତରିତ ହୋଇଗଲା ଖିଲିଖିଲି ହସରେ । ସତେ ଅବା ଚୁଲ୍‌ବୁଲୀ କିଶୋରୀଟିଏ ମଧୁର ଗୀତଟିଏ ବୋଲୁଛି ! ସତେ ଅବା କଳକଳ ନାଦ କରି ଝରଣାଟିଏ ବୋହିଯାଉଛି । ସତେଅବା ନୀଳ ଜଳରାଶି ଭିତରେ ଫୁଟିଥିବା ଗୋଲାପୀ ପଦ୍ମଫୁଲରୁ ପ୍ରସ୍ତପ୍ରସ୍ତ ପାଖୁଡ଼ା ଖସିପଡୁଛି !!

"କ'ଣ କହିଲ ?" -କାନ୍ଦ ଓ ହସର ମଝାମଝି ସୋପାନରେ ଠିଆହୋଇ ଝିଅଟି (ଏବେଠାରୁ ଧରି ନିଆଯାଉ ସେପାଖର ନାରୀଟି ଗୋଟେ ଝିଅ । ସବ୍ୟସାଚୀଙ୍କ ମନ ଠିକ୍ ଏୟା ହିଁ ଚାହୁଁଥିଲା ।) କହିଲା- "ନାରୀମାନଙ୍କ କାନ୍ଦ ତୁମେ ସହ୍ୟ କରିପାରନା ? ବାଃ ... ଚମତ୍କାର ! ମତେ ତ ସାରା ଜୀବନ କନ୍ଦେଇ କନ୍ଦେଇ ଆସିଲ ! ସେଥିପାଇଁ ଦୁଃଖ ନାଇଁ । କାନ୍ଦରେ ବି ଏକ ସୁଖ ଲୁଚି ରହିଥାଏ, ଜାଣିଛ ନା ନାଇଁ ? ଏବେ କହୁଛ ନାରୀର କାନ୍ଦ ମୁଁ ସହ୍ୟ କରିପାରେନା !! ସତରେ ତମେ କେଡ଼େ ମିଛୁଆ ହୋଇଗଲଣି ଯା ଭିତରେ ?"

ସବ୍ୟସାଚୀ ଚୁପ୍ ରହିଲେ । ଚୁପ୍ ରହିବାକୁ ବାଧ ହେଲେ ।

"ତମର ମନେ ଅଛି ଶୋଭନ୍, ଆମର ପ୍ରଥମ ଦେଖାହେବା ଦିନର କଥା ? ନା ସେକଥା ବି ଭୁଲିଗଲଣି ? ହଁ, ତୁମ ପୁରୁଷମାନଙ୍କ ପକ୍ଷରେ ସବୁ ଭୁଲିଯିବା ସ୍ୱାଭାବିକ । ଆକାଶରେ ସେଦିନ ପ୍ରଚୁର ବର୍ଷାର ରୋଷଣୀ । ପୃଥିବୀର ଛତ୍ରେ ଛତ୍ରେ ସବୁଜିମାର ବନ୍ୟା । ଗୋଧୂଳି ସମୟ । ଅଦ୍ଭୁତ ଏକ ରୋମାଞ୍ଚ ରୋମାଞ୍ଚ ପାଗ । କେଉଁଠି ଥିଲ ତମେ ସେତେବେଳେ ? ନା, ତମେ ଏକା ନୁହଁ, ମୁଁ ବି । ନ, କେବଳ ତମେ ଓ ମୁଁ ନୁହନ୍ତି, ଆଉ ଚାରି ଛ'ଜଣ ବି ଥିଲେ । ଗୋଟେ ଆଇ୍‌ବେଷ୍ଟସ୍ ଦୋକାନ ବାରଣ୍ଡାରେ । ତମେ ପିନ୍ଧିଥିଲ ଗାଢ଼ କଳା ପ୍ୟାଣ୍ଟ ଓ ଚେକ୍ ସାର୍ଟ । ବର୍ଷା ଛିଟ୍‌କାରେ ତମ ପ୍ୟାଣ୍ଟ ଓ ବୁଟ୍ ଓଦା ହେଉଥିଲା । ଓଦା ହେଉଥିଲା ମୋ ଶାଢ଼ୀ । ସୂର୍ଯ୍ୟ ନଥିଲେ ଆକାଶରେ । ଯଦିଓ ଥିଲେ, ମେଘ ଦ୍ୱାରା

ସଂପୂର୍ଣ୍ଣ ପରାସ୍ତ ହୋଇ ଲଜ୍ଜାରେ, ଅପମାନରେ ତରବର ହେଉଥିଲେ ଲୁଚିଯିବାକୁ ।

ପ୍ରଚଣ୍ଡ ଏକ ଘଡ଼ଘଡ଼ି ଶବ୍ଦରେ ମୁଁ ଚମକି ପଡୁଥିବା ବେଳେ ତମେ ମତେ ଚାହିଁ ହସିଦେଲ । ମୁଁ ଲଜ୍ଜାରେ ଝାଉଁଳି ପଡୁଥିବା ବେଳେ ତମେ ମୁହଁ ବୁଲାଇ ହସୁଥିଲ ଓ ମତେ ଚାହୁଁଥିଲ । ଚାହୁଁଥିଲ ଓ ହସୁଥିଲ... ।

ବର୍ଷା ଟିକେ ଛାଡ଼ିଯିବା ପରେ ଯିଏ ଯୁଆଡ଼େ ଚାଲିଗଲେ, ତମ ଓ ମୋ ବ୍ୟତୀତ । ପାହାଚ ଉପରେ ପାହାଚ ଅତିକ୍ରମ କରି ଅନ୍ଧାର ଓହ୍ଲାଉଥିଲା ପୃଥିବୀକୁ ।

"ଆପଣ କୁଆଡ଼େ ଯିବେ ?" - ନୀରବତାକୁ ଚହଲେଇ ତମେ ପଚାରିଲ ।

"ଭଦ୍ରକ" ।- ମୁଁ ଉତ୍ତର ଦେଲି ଓ ଧୀର ସ୍ୱରରେ ପଚାରିଲି- "ଆପଣ ?"

"କୁଆଖିଆ ।"- ତମେ କହିଲ ।

ଅଥଚ ତମେ ସେଦିନ କୁଆଖିଆରେ ଓହ୍ଲାଇଲ ନାହିଁ । ମୋ ଡାହାଣ ପାଖ ଗୋଟେ ଦି'ଜଣିଆ ସିଟ୍‌ରେ ତମେ ବସିଥିଲ ଆଖିବୁଜି । ଶୋଇ ପଡ଼ିଥିଲ କି ? କେଜାଣି ? ସେତେବେଳେ ତମ ସହିତ ମୋର ସମ୍ପର୍କ ଏତେ ଗାଢ଼ ହୋଇନଥିଲା ଯେ ମୁଁ ତମକୁ ନିଦରୁ ଉଠାଇ ଦେଇଥାନ୍ତି, ଷ୍ଟପେଜ ଆସିଗଲା ଓହ୍ଲାଇପଡ଼ ବୋଲି ତାଗିଦ କରିଥାନ୍ତି କିମ୍ବା ମୋ ସାଙ୍ଗରେ ଚାଲ, ଭଦ୍ରକ ଷ୍ଟେପେଜରେ ଓହ୍ଲାଇବ ବୋଲି ଅନୁରୋଧ ମିଶା ଅଳି କରିଥାନ୍ତି !

ଏହାର ଅନେକ ଦିନ ପରେ... ତମ ମୋ ସମ୍ପର୍କ ପ୍ରଗାଢ଼ ପ୍ରେମରେ ରୂପାନ୍ତରିତ ହେବା ପରେ ମୁଁ ଜାଣିଲି ତମର ସେଦିନ କୁଆଖିଆ ଯିବାର ନଥିଲା । ତମ ଘର ସେଆଡ଼େ ନୁହେଁ । ତମେ ଭୁବନେଶ୍ୱର ବାସିନ୍ଦା ଏବଂ କିଛି ଗୋଟାଏ ଜିନିଷ କିଣୁ କିଣୁ ବର୍ଷା ଯୋଗୁଁ ସେଠି ଅଟକି ଯାଇଥିଲ। କି ସମ୍ମୋହନରେ ତମେ ସେଦିନ, ସେପରି ଏକ ବର୍ଷଣମୁଖର ସଂଧ୍ୟାରେ ଚାଲିଗଲ ଭଦ୍ରକ ଯାଏ ? ଏବଂ ସେଠି ଓହ୍ଲାଇଗଲା ପରେ କେତେବେଳେ ପୁଣି ବସ୍ ଧରିଲ ଭୁବନେଶ୍ୱର ?

ତମେ ଶୁଣୁଛଟି ଶୋଭନ୍ !- ଓଦା ଓଦା କଣ୍ଠରେ ପ୍ରଶ୍ନ କଲେ ସେ ।

'ୟେସ୍, କହିଚାଲ ।'- ସବ୍ୟସାଚୀ ଉତ୍ତର ଦେଲେ ।

"ଭୁବନେଶ୍ୱରରୁ ଭଦ୍ରକ ଶହେ ତିରିଶ କିଲୋମିଟର ବାଟ । ତା' ପରଠାରୁ ଅଫିସରୁ ରୋଜ୍ ବାହାରି ଠିକ୍ ଦୁଇଟା ବେଳେ ତମେ ବସ୍ ଧର ଭଦ୍ରକ । ପାଞ୍ଚଟା ବେଳେ ପହଞ୍ଚ ! ମୁଁ ଠିଆ ହୋଇଥାଏ ନିର୍ଦ୍ଧାରିତ ସ୍ଥାନରେ । ଠିଆହୋଇ ଅପେକ୍ଷା କରିଥାଏ କେହି ଜଣେ ଆପଣାର ମଣିଷ ଆସିବ । ପୃଥିବୀର ସବୁ ସୁଖ, ଆନନ୍ଦ, ସୁଗନ୍ଧ, ଐଶ୍ୱର୍ଯ୍ୟକୁ ସାଙ୍ଗରେ ଧରି ଆସିବ । ଫୁଲରେ ଫୁଲରେ ମଣ୍ଡି ହୋଇଯିବ ପାଦଠୁ ଆକାଶ । ତମେ ଆସ, ପାଖରେ ଠିଆହୁଅ । କେତେ ସମୟ ବା ରୁହ ? କଣ ବା କଥା ହୁଅ ? ଦଶ ମିନିଟ୍... କୋଡ଼ିଏ ମିନିଟ୍ ... ଅଧଘଣ୍ଟା ... !! ଅନ୍ଧାର ନଇଁ ଆସିବା ପୂର୍ବରୁ ମୁଁ ତରବର ହୁଏ ସେଠୁ ମାତ୍ର

ଗୋଟିଏ କିଲୋମିଟର ଦୂର ମୋ ଘରକୁ ଫେରିଯିବା ପାଇଁ । ପହଞ୍ଚିବା ବେଳ ଟିକ୍ ଟିକ୍ କରୁଥିବା, ସମସ୍ତ ପ୍ରାପ୍ତିର ଅଧୀଶ୍ୱର ହୋଇଯିବା ପରି ଝଲସୁଥିବା ତୁମ ମୁହଁ ଝାଉଁଳି ପଡ଼େ ବୃନ୍ତଚ୍ୟୁତ ଫୁଲଟିଏ ପରି । ତମେ ପୁଣି ଥରେ ବସ୍ ଧର ଭୁବନେଶ୍ୱର । କେତେ ରାତିରେ ପହଞ୍ଚ କେଜାଣି ?

ସବ୍ୟସାଚୀଙ୍କ ଦୃଷ୍ଟି ପଡ଼ିଲା କାନ୍ଥ ଘଣ୍ଟାରେ । ରାତି ସାଢ଼େ ଗୋଟାଏ । ତାଙ୍କ ଶୋଇବାର ବେଳ । ନିଦକୁ ଆମନ୍ତ୍ରିତ କରିବାକୁ ଗୋଟାଏ ଦୁଇଟା ହାଇ ମଧ୍ୟ ଆସିସାରିଲେଣି । ଭାରି କ୍ଲାନ୍ତ ବି ଲାଗିଲାଣି । ବାଧ୍ୟ ହୋଇ ସେ କହିଲେ- "ଦେଖ, ମୁଁ... ମାନେ... ମତେ ଭାରି ନିଦ ଲାଗିଲାଣି । ଆପଣ ... ଆଇ ମିନ୍ ତମେ... ।

"କଣ କହିଲ ? ନିଦ ଲାଗିଲାଣି ? ମୋ କଥା ଶୁଣୁଶୁଣୁ ତମକୁ ନିଦ ଲାଗିଲାଣି ! ସତରେ ଆମୋଦିତ ହେଲି ଏକଥା ଶୁଣି ! ଆଃ କୁଆଡ଼େ ଗଲା ସେଇ ସମୟ ! ମୋ ସହିତ ଗପି ଗପି ... ନା... ନା... କେବଳ ମୋ ମୁହଁକୁ ଚାହିଁଚାହିଁ ବିତାଇ ଦେଉଥିଲ ରାତି ପରେ ରାତି । ସେତେବେଳେ ତମ ଆଖିରେ ନା ଥିଲା ନିଦ, ନା ଥିଲା ପେଟରେ ଭୋକ । କଣ କହୁଥିଲ ସେତେବେଳେ, ତମର ମନେ ନାହିଁ ଶୋଭନ ? କହୁନଥିଲ- "ତମ ଆଖିର କୁହୁକ ମତେ ତନ୍ଦ୍ରାହୀନ କରିଦେଇଛି ସୁଜି, ତମ କଥାର ସଂଗୀତ ମତେ ସମ୍ମୋହିତ କରି ରଖିଛି ସୁଜି, ମୋର ଆଉ କ'ଣ ଦରକାର ? ଏ ଅଳୀକ ପରମାୟୁ ପାଇଁ କ'ଣ ସେତିକି ଯଥେଷ୍ଟ ନୁହେଁ ?"

"କହୁ ନଥିଲ ଏକଥା ? ସତରେ କ'ଣ ତମର ମନେ ନାଇଁ ?"

"ନା, ସେସବୁ ମୋର କିଛି ମନେ ନାହିଁ । ସେସବୁ କେବେ ମୁଁ ତମକୁ କହିନାହିଁ । ଜୀବନରେ ମୁଁ କାହାକୁ ପ୍ରେମ କରିନାହିଁ । ତମେ ମତେ ଯାହା ଭାବୁଛ ଅସଲରେ ମୁଁ ସେ ନୁହେଁ । ରଖିଲି ଫୋନ୍ । ଗୁଡ଼୍‌ବାଏ ।" -ପାଟିରୁ ବାହାରି ଆସୁଥିଲା ଏସବୁ କଥା । ରୋକିନେଲେ ସବ୍ୟସାଚୀ । ତାଙ୍କର କିଛି କହିବାର ନଥିଲା, କେବଳ ଶୁଣିବା ବ୍ୟତୀତ । ଅତଏବ ସେ ଚୁପ୍ ରହିଲେ ।

"ସତରେ ତମର ମନେ ନାହିଁ ଶୋଭନ୍ ?- ସେପାଖରୁ ଶୁଭିଲା- "ଆଚ୍ଛା ହଉ, ସେକଥା ସିନା ମନେ ନାହିଁ, ଜ୍ୟୋତିଅପା ବାହାଘର ଦିନ ରାତିରେ ତାଙ୍କ ଛାତ ଉପରର କଥାବି କ'ଣ ଭୁଲିଗଲ ? ସେଦିନର ସେଇ ଶିଶିରଭିଜା ଜହ୍ନରାତି, ସୁଲୁସୁଲିଆ ଦକ୍ଷିଣା ପବନ, ଉଷ୍ମ ନିଶ୍ୱାସ, ନିବିଡ଼ ଆଲିଙ୍ଗନ, ରୋମାଞ୍ଚିତ ଆବେଗକୁ କ'ଣ ଭୁଲିଗଲ ? ଏସବୁ କ'ଣ ଏତେ ସହଜରେ ଭୁଲି ହୁଏ ? ସତରେ ଭୁଲି ହୋଇଯାଏ ??

"କେଜାଣି କାହିଁକି ପୃଥିବୀର ଅନେକ ଅନେକ ଲୋକମାନଙ୍କ ଭିତରୁ ତମେ ମନେ ହୁଅ ମୋର ଏକାନ୍ତ ଆପଣାର । ତମ ସହିତ ମୋର ଯେପରି ଜନ୍ମଜନ୍ମାନ୍ତର ସମ୍ପର୍କ । ଆଉ

ସବୁ ମିଛି ତମ ମୋ ସଂପର୍କ ବ୍ୟତୀତ । ତମକୁ ଦେଖିଲେ ଜୀବନ ପ୍ରତି ପ୍ରଲୋଭନ ବଢ଼ିଯାଉଛି, ଭୟ ଲାଗୁଛି ଏପରି ମହାର୍ଘ ଅଭିଜ୍ଞତାକୁ ଅଙ୍ଗେ ଲିଭାଉ ଲିଭାଉ କାଳେ ସରିଯିବନି ତ ଏ ସୀମିତ ପରମାୟୁ !" - ଏକଥା ତମେ ସେଦିନ ରାତିରେ ମତେ କହିନଥିଲ କୋଳକୁ ଆଉଜାଇ ନେଇ ?

ମୁଁ ଜାଣେ ଶୋଭନ୍, ତମେ ଏବେ ମୋଠାରୁ ଅନେକ ଦୂରରେ । ହେଲେ ଲାଗୁଛି, ତମେ ଯେପରି ଅଛ ମୋ ପାଖରେ । ପାଖରେ ମାନେ ଅତି ନିକଟରେ, ଏ ଦୁଇବାହୁର ବଳୟ ଭିତରେ । ମୁଁ ବହିଟିଏ ଧରିଲେ ତମ ହାତ ଧରିବା ପରି ଲାଗୁଛି, ପାଣି ଗ୍ଲାସ୍ ଧରିଲେ ବି ... ଘର ଓଳାଇବା ପାଇଁ ଝାଡୁ ଧରିଲେ ବି .... ପାଣି ଆଣିବା ପାଇଁ ବାଲ୍‌ତି ଧରିଲେ ବି । ଦିଗ୍‌ବଳୟକୁ ଚାହିଁଲେ ଦିଶିଯାଉଛି ତୁମ ମୁହଁ ... ମାଟିକୁ ଚାହିଁଲେ ବି ... ପାଣିକୁ ଚାହିଁଲେ ବି .... ଆକାଶକୁ ଚାହିଁଲେ ବି ।

ସବ୍ୟସାଚୀ ସେତେବେଳକୁ ଜାଣି ସାରିଲେଣି ତାଙ୍କ ଅନୁମାନ ଶତକଡ଼ା ଶହେ ପ୍ରତିଶତ ନିର୍ଭୁଲ୍ । ଯେ ଜଣେ ବ୍ୟର୍ଥ, ପ୍ରତ୍ୟାଖ୍ୟାତ ପ୍ରେମିକା । ଶୋଭନ୍ ନାମକ ଯୁବକଟିଏ କି ଦୋଷରେ କିମ୍ବା ବିନା ଦୋଷରେ ଯାଙ୍କୁ ଛାଡ଼ି ଚାଲିଯାଇଛି । ତାଙ୍କୁ ସେ ଶୋଭନ୍ ବୋଲି ଭାବି ନିଜ ଭିତରର ସବୁ ଉଦ୍‌ଗତ କୋହ ଅଜାଡ଼ି ପକାଉଛନ୍ତି ତାଙ୍କ ଆଗରେ । ନା, ଏସବୁ ଠିକ୍ ନୁହେଁ । ପରିସ୍ଥିତି ଏବଂ ନିଜର ଇଚ୍ଛା, ଆଗ୍ରହକୁ ସନ୍ତୁଷ୍ଟ କରିବା ପାଇଁ ସେ ଯେଉଁ ଛଳନାରେ ଆଶ୍ରୟ ନେଇଛନ୍ତି, ତାହା ଭାରି ଭୟଙ୍କର । ଭୟଙ୍କର ଓ ପିଲାଳିଆ । ପିଲାଳିଆ ଓ ପାଗଳାମୀ । ଅନ୍ୟର ଚିଠି କିମ୍ବା ବ୍ୟକ୍ତିଗତ ଡାଏରୀ ଲୁଚେଇ ଲୁଚେଇ ପଢ଼ିବା ପରି ଅନ୍ୟର ଗୋପନ କଥା ଶୁଣିବା ବି କମ୍ ଅପରାଧ ନୁହେଁ । ଆଉ ନୁହେଁ । ଝିଅଟିକୁ ସେ ସଫା ସଫା କହିଦେବେ ସେ ଶୋଭନ୍ ନୁହନ୍ତି । ସେ ହେଉଛନ୍ତି ସବ୍ୟସାଚୀ । ସବ୍ୟସାଚୀ ପରିଡ଼ା । ସେକ୍ରେଟାରୀଏଟ୍‌ର ଜେନେରାଲ ଆଡ୍‌ମିନିଷ୍ଟ୍ରେସନ୍ ବିଭାଗର ବରିଷ୍ଠ ସହାୟକ । ଜଣେ ଅଳ୍ପ ପରିଚିତ, ଅଳ୍ପ ପ୍ରଚାରିତ ଲେଖକ ।

"ତମେ ଚାଲିଗଲ !" - ସବ୍ୟସାଚୀଙ୍କ ଭାବନାକୁ ବାଧା ଦେଇ ସେପାଖରୁ ଶୁଭିଲା ଥମ୍‌ଥମ୍ ସ୍ୱର- ତଥାପି କିଛି ନାହିଁ ନାହିଁର ଏ ଜୀବନର କେତେ ଆକର୍ଷଣ ଦେଖ ! ପଡ଼ି ରହିଛି ଯାବତୀୟ ଦୁଃଖ, ଯାତନାକୁ ବରଦାସ୍ତ କରି । ଅପେକ୍ଷା କରିଛି ଦିନେ ନା ଦିନେ, କେଉଁଠୁ ନା କେଉଁଠୁ, କେହି ନା କେହି ଜଣେ ପ୍ରେମର ସଂଗୀତ ବୋଲି ବୋଲି ଫେରିବ । ଆଞ୍ଜୁଳାଏ ଜଳ ପରି ଶୋଷିନେବ ଜୀବନର ସବୁ ଏକଲାପଣ । ତମେ କେବେ ଫେରିବ ଶୋଭନ୍ ? କୁହ, କେବେ ?

"ଶୋଭନ୍, ଥରେ କହିଦିଅ, ଏତେ ନିଃଶବ୍ଦରେ, ଚୁପ୍‌ଚାପ୍ କାହିଁକି ଚାଲିଗଲ ତମେ ? କ'ଣ ମୋର ଦୋଷ ? କେଉଁଦିନ ତମକୁ ବ୍ୟଥିତ କଲା ପରି କଥାପଦେ କହିଛି ? କେବେ

ଠିଆ ହୋଇଛି ତୁମ ଚଲାପଥର ଅନ୍ତରାୟ ହୋଇ ? କୁହ କାହିଁକି ଏପରି ହେଲା ? ପୃଥିବୀରେ ଏତେ ଝିଅ ଥାଉଁ ଥାଉଁ, ଏତେ ସୁଖ ଥାଉଁ ଥାଉଁ ମୋ ଭାଗ୍ୟରେ ଏପରି କାହିଁକି ଘଟିଲା ? କୁହ.... ଜବାବ ଦିଅ !!"

"ଶୋଭନ୍, ଏ ଶୋଭନ୍, ଥରେ ମାତ୍ର ତମେ ଆସନ୍ତନି ! ମାତ୍ର ଥରଟିଏ । ନା, କୌଣସି ଅଧିକାରର ଦ୍ୱାହି ଦେଇ ତମକୁ ଅଟକାଇବିନି । ଜୋର ଜବରଦସ୍ତ କରିବିନି । କାନ୍ଦିକାଟି ଉଚ୍ଛନ୍ନ ହେବିନି । ଥରଟିଏ ଆଖି ପୂରାଇ ଦେଖିବି ତମକୁ । ତୁମ ଦେହରେ ଟିକେ ହାତ ମାରିବି । ବାସ୍, ତାପରେ ତମବାଟରେ ତମେ... ମୋ ବାଟରେ ମୁଁ... ।"

"କୁହନା ଶୋଭନ୍ ... ମୁହୂର୍ତ୍ତକ ପାଇଁ ହେଉପଛେ .... ଥରେ, ମାତ୍ର ଥରେ ..." ଶୋକର ତୀବ୍ରତାରେ ଆଉ ଶୁଭୁନଥିଲା ତାଙ୍କ କଥା । ପ୍ରଖର ସୁଅରେ ଶୁଖିଲା ପତ୍ରଟିଏ ପରି ଭାସିଯାଉଥିଲା ସବୁ କିଛି ।

ସବ୍ୟସାଚୀଙ୍କ ଦେହ ଭିତରେ ସୃଷ୍ଟି ହୋଇଯାଉଥିଲା ଏକ କରୁଣ ଧ୍ୱନି । ସେ ଜାଣି ପାରୁନଥିଲେ କେତେବେଳେ ତାଙ୍କ ଆଖିରୁ ଝରି ଆସୁଛି ଧାରଧାର ଲୁହ । ଆଉ ଅଧିକ ସମ୍ଭାଳି ନପାରି ସେ କହି ପକାଇଲେ- "ଦେଖନ୍ତୁ ମ୍ୟାଡାମ୍, ଆପଣଙ୍କ କଥାରୁ ମୁଁ ସବୁ ଅନୁମାନ କରିସାରିଲିଣି ! ଆପଣଙ୍କ ପାଇ ମୁଁ ପ୍ରଚୁର ଦୁଃଖିତ ! ମତେ କ୍ଷମା କରିବେ ମୁଁ ଆପଣଙ୍କର ଶୋଭନ୍ ନୁହେଁ ... ମୁଁ ...

'ମୁଁ ଜାଣେ ।' - ସେ ପାଖରୁ ଶୁଭିଲା ଗମ୍ଭୀର ଅଥଚ ଆର୍ଦ୍ର ସ୍ୱରଟିଏ ।

'ମାନେ ?' - ସବ୍ୟସାଚୀ ଚମକି ପଡ଼ିଲେ ହଠାତ୍ ।

"ଆପଣ ଶୋଭନ୍ ନୁହଁନ୍ତି, ମୁଁ ଜାଣେ । ଆପଣ ମୋ ପାଇଁ ଭୀଷଣ ଦୁଃଖିତ, ଏ କଥା ବି ଜାଣେ । ଆହୁରି ମଧ୍ୟ ଜାଣେ ଯେ ଆପଣ ଜଣେ ଲେଖକ । ସେଇଥିପାଇଁ ତ ମୁଁ ଚାହେଁ ଆପଣଙ୍କ ସାହାଯ୍ୟ ।"

ସବ୍ୟସାଚୀଙ୍କ ହୃତ୍ସ୍ପନ୍ଦନ ବଢ଼ିଗଲା । ବେଶ୍ କିଛି ସମୟ ସେ କିଂକର୍ତ୍ତବ୍ୟବିମୂଢ଼ ଅବସ୍ଥାରେ ରହିଗଲେ । ସେପରି ଅବସ୍ଥାରୁ ନିଜକୁ ମୁକୁଳାଇ ଆଣି ସେ କହିଲେ- ବାସ୍ତବିକ୍ ଆପଣଙ୍କ କଥା ଶୁଣି ମୁଁ ଦୁଃଖରେ ଅଭିଭୂତ ହୋଇପଡ଼ିଛି । ଆପଣଙ୍କ ପାଇଁ ଯେ କୌଣସି କାମ କରିବାକୁ ମୁଁ ପ୍ରସ୍ତୁତ ।

ମତେ ଶୋଭନ୍‌ର ଠିକଣ ଦିଅନ୍ତୁ । ଯଦି ଜଣାନାହିଁ, ଦୁଃଖ ନାହିଁ । ପୃଥିବୀର ଯେ କୌଣସି କୋଣରୁ ମୁଁ ତାଙ୍କୁ ଖୋଜିଆଣି ଦୁଇଜଣଙ୍କର ମିଳନ କରାଇବି । ପ୍ରମିସ୍ । କେବଳ ଆପଣଙ୍କ ଠିକଣାଟା ମତେ ଜଣାନ୍ତୁ ।

ଶବ୍ଦଟିଏ ଶୁଭିଲା ସେପାଖରୁ । ତାହା ଏକ ଶୁଷ୍କ ହସ କି ଆର୍ଦ୍ର କାନ୍ଦ, ସେକଥା ଜାଣି ପାରିଲେନି ସବ୍ୟସାଚୀ ।

"ମିଳନ ହେବାର ବୟସ କ'ଣ ଆଉ ଅଛି ? - କହିଲେ ଭଦ୍ରମହିଳା - ତାହାତ ଅନେକ ଦିନରୁ ଅତିକ୍ରାନ୍ତ । ମତେ ବା'ଷଠୀ ଚାଲିଲାଣି, ଶୋଭନ୍ ଏ ସଂସାରରୁ ବିଦାୟ ନେବାର ଚାଳିଶ ବର୍ଷ ବିତିଗଲାଣି । ଆମ ବାହାଘରର ପ୍ରସ୍ତୁତି ପୂର୍ବରୁ ସେ ଚାଲିଗଲେ । ମୋ ଠିକଣା ? ମୁଁ ତ ଆପଣଙ୍କ ପଡ଼ୋଶୀ, ଆପଣଙ୍କର ଠିକ୍ ତଳ ମହଲାରେ ରହୁଛି ପାଞ୍ଚବର୍ଷ ହେଲା .... ।"

ସବ୍ୟସାଚୀଙ୍କ କାନମୂଳ ଝାଇଁ ଝାଇଁ କଲା । ତାଙ୍କୁ ଲାଗିଲା ସେ ବୋଧହୁଏ ସ୍ୱପ୍ନଟିଏ ଦେଖୁଛନ୍ତି ଠିଆ ଠିଆ । ଗୋଟିଏ ପଥର ମୂର୍ତ୍ତି ପରି ବାକ୍‌ଶୂନ୍ୟ ଅବସ୍ଥାରେ ଠିଆ ହୋଇଥିଲେ ରିସିଭର୍‌କୁ କାନ ପାଖରେ ଧରି ।

"ମଣିଷର ସୁଖ ଦୁଃଖ, ହସ କାନ୍ଦ, ଜୀବନ ଯନ୍ତ୍ରଣାକୁ ନେଇ ଆପଣ- ଲେଖକମାନେ କେଡ଼େ ସୁନ୍ଦର ଗପ ଲେଖନ୍ତି ପରା !" -କହିଲେ ସେ !-"ଶୋଭନଙ୍କୁ ନେଇ ଗପଟିଏ ଲେଖିବେ ? ଭାରି ହନ୍ତସନ୍ତ କରୁଛି ତାଙ୍କ ସ୍ମୃତି । ରହି ହେଉନାହିଁ ଜମା । କୁହନ୍ତୁ, ଲେଖିବେ ଟି !!

ସବ୍ୟସାଚୀଙ୍କ ହାତରୁ ଖସି ପଡୁଥିଲା ରିସିଭର୍ । ଖସି ପଡୁଥିଲେ ସେ ନିଜେ । ପୃଥିବୀକୁ ଆଲିଙ୍ଗନମୁକ୍ତ କରିବାକୁ ତରବର ହେଉଥିଲା ଅନ୍ଧାର । ■

# ଜୋସ୍ନାର ବିଳାପ

ଯୁଗଳ କିଶୋର ଦତ୍ତ

ଫୋନ୍ ରିସିଭରଟା କାନ ପାଖରେ ଆହୁରି ଚାପିଧରି ହସି ହସି ମିସେସ୍ ମାମିନା କୁହନ୍ତି, ତୁମେ ମୋତେ ତେବେ ଭୁଲି ଯାଇନ ଦେଖୁଛି- କେତେବେଳେ ଆସିବ- ହଁ-ହଁ ଠିକ୍ ତିନିଟା ବେଳକୁ ଆସ- ହଁ ନିଶ୍ଚୟ ଥିବି । ରମେନ ହୁଏତ ଆଜି ଆସିପାରେ, କ'ଣ କହିଲ ନା- ଦି'ପହରେ ମୁଁ ଶୁଏ ନାହିଁ-ଅଛା-ରହିଲି ।

ମିସେସ୍ ମମତା ଦାସ ଘରର ଚାରିପଟକୁ ଚାହାନ୍ତି, ଆଇନା ପାଖରେ ଠିଆ ହୋଇ ମୁଣ୍ଡରେ ପାନିଆ ବୁଲାଇ ନେଇ କୁଙ୍କୁମର ଟିପ ମଥାରେ ଲଗାଇ, ଚେୟାର ଉପରେ ବସନ୍ତି । ହାତ ଘଡଟାକୁ ଚାହିଁ ଭାବନ୍ତି, ଆହୁରି ଦୁଇଘଣ୍ଟା ବାକି, ସେଲ୍‌ଫ ଉପରୁ ପତ୍ରିକା ଆଣି ପଢ଼ନ୍ତି । କିଛି ଭଲ ଲଗେ ନାହିଁ । ଖଟ ଉପରେ ଆସି ବସନ୍ତି ।

ଦୁଇ ନମ୍ବର ଘରର ଭଡ଼ାଟିଆ ମିଃ ବଲବିର ସିଂ କୁହନ୍ତି, ମିସେସ୍ ମାମିନା ଟ୍ୟାପ୍‌ରେ ଦୁଇଦିନ ହେଲା ପାଣି ଆସୁନାହିଁ । କିଛି ବ୍ୟବସ୍ଥା କଲେ । ବିଛଣା ଉପରୁ ଉଠିପଡ଼ି ମମତା କୁହନ୍ତି, ଆଇ ୟାମ୍ ସରି ମିଃ ସିଂ । ବର୍ତ୍ତମାନ ମୁଁ ଫୋନ୍ କରି ଦେଉଛି । ସବୁ ଠିକ୍ ହୋଇଯିବ । ମିଃ ସିଂ ହସି ହସି ଥ୍ୟାଙ୍କ୍ ୟୁ କହି ବିଦାୟ ନିଅନ୍ତି । ଯିବାବେଳେ ମମତା ଦାସ ଅନୁରୋଧ କରି କୁହନ୍ତି, ସମୟ କରି ପଛକୁ ନିଶ୍ଚୟ ଆସିବେ ମିଃ ସିଂ ।

ମିଃ ସିଂ ଚାଲିଯିବା ପରେ ନିଜକୁ ପୁଣି ଏକୁଟିଆ ଅନୁଭବ କରନ୍ତି ମିସେସ୍ ମମତା ଦାସ ।

ସେଲଫ ଉପରୁ ପତ୍ରିକା ଆଣି ଆଖି ବୁଲାନ୍ତି । ଗୋଟାଏ ଗଳ୍ପ ପଢ଼ୁ, ପଢ଼ୁ ନିଜକୁ ନିଜେ ଅସହାୟ ମନେ କରନ୍ତି । ଭାବନ୍ତି- ନା-ନା, ଲେଖକର ଏମିତି ପରିସମାପ୍ତି ଠିକ୍ ହେଲାନାହିଁ । ଗୋଟାଏ ଝିଅକୁ ପ୍ରେମକରି ଜଣେ ଯୁବକ ତାର ସାରା ଜୀବନଟା ବିତାଇ ଦେଇଥିଲେ ମଧ୍ୟ ଶେଷକୁ ଆତ୍ମହତ୍ୟା କଲା- ନୋ-ନୋ, ଇଟ ଇଜ୍ ଆବସର୍ଡ଼ ।

ଭାବନାରେ ପୁଣି ଛନ୍ଦ ପତନ ହୁଏ । ତିନି ନମ୍ବର ଘରର ଭଡ଼ାଟିଆ ମିଃ ମହାନ୍ତି କୁହନ୍ତି, ମୁଁ ଆସିପାରେ ମିସେସ୍ ମାମିନା ।

ବିରକ୍ତିରେ ମନ ଭରିଯାଏ । ନା- ଏମାନେ ଟିକିଏ ଶାନ୍ତି ଦେବେ ନାହିଁ । ତଥାପି

ମୁହଁରେ ହସଭରି କୁହନ୍ତି- ଇୟେସ୍ କମଇନ୍ ।

ମିଃ ମହାନ୍ତି କୁହନ୍ତି, ମୋ ଘରର ମେନ୍ ସୁଇଚ ଦୁଇଦିନ ହେବ ମରାମତି ହେଲା ନାହିଁ । ବିନା ଆଲୁଅରେ କିପରି ଚଳିବି ? ସାନ ପୁଅଟାକୁ ତିନିଦିନ ହେବ ଜ୍ୱର ହୋଇଛି ।

ମମତା ଦାସଙ୍କ ମୁହଁ କଠିନ ହୋଇ ଉଠେ। ମନ ହୁଏ କହିବାକୁ- ଦେଖନ୍ତୁ ମହାନ୍ତି ବାବୁ, ଘର ଭଡ଼ା ଦେଇଛି ବୋଲି ସବୁ ଜିନିଷ ଦେଖିବା ମୋର କର୍ତ୍ତବ୍ୟ ହୋଇପାରେ, ତଥାପି ଅସୁବିଧା ପାଇଁ ଆପଣ ଟିକିଏ ସବ୍‌ଷ୍ଟେସନ୍ ଚାଲିଯାଇ ଖବର ଦେଇଥିଲେ କ'ଣ ଅନ୍ୟାୟ ହୋଇଥାଆନ୍ତା। କିନ୍ତୁ ନିଜକୁ ସମ୍ଭାଳି ନେଇ କୁହନ୍ତି, ଆଛା ଯାଆନ୍ତୁ ମୁଁ ବ୍ୟବସ୍ଥା କରୁଛି ।

ପତ୍ରିକାଟିକୁ ରାଗରେ ଫୋପାଡ଼ି ଦିଅନ୍ତି ମମତା ଦାସ ।

ନିଜର ଜୀବନ ପ୍ରତି ଘୃଣା ଆସେ । କ'ଣ ହେବ ଏମିତି ଜୀବନ ନେଇ । ଗୋଟାଏ ଜୀବନ ବିତାଇ ଦେବାକୁ ତାଙ୍କର ଅଗାଧ ସମ୍ପତ୍ତି ଅଛି । ହେଲେ ଜୀବନଟା କ'ଣ ଖାଲି ଟଙ୍କା ଆଉ ପଇସା । ପୁଅ ରାଜିବ ଡେରାଡୁନ୍‌ରେ ମେଜର ପଦରେ ପ୍ରତିଷ୍ଠିତ । ସାନ ପୁଅ ରମେନ ବୁର୍ଲାରେ ଡ଼ାକ୍ତିର ପଢୁଛି । ଆଉ ସ୍ୱାମୀ ତାଙ୍କ କଥା ସେ ଏକ ପ୍ରକାର ଭୁଲିଗଲେଣି ।

ନିଜର ଚଳିବା ପରି ଦୁଇ ବଖରା ଘରରଖି ଆଉ ସମସ୍ତ ଘରକୁ ଛଅ ଗୋଟି ଭାଗରେ ବିଭକ୍ତି କରି ଭଡ଼ା ଦେଇଛନ୍ତି । ହେଲେ ସାରା ଦି'ପହରଟା ମମତା ଦାସ ଶାନ୍ତିରେ ଚଳି ପାରନ୍ତି ନାହିଁ। ଭଡ଼ାଟିଆମାନଙ୍କର ସାନ ସାନ ପିଲାଗୁଡ଼ିଙ୍କର ଗୋଳମାଳରେ ମମତା ଦାସଙ୍କ ଶାନ୍ତି ଭଙ୍ଗ ହୁଏ । ବେଳେବେଳେ ଭାବନ୍ତି ଏଗୁଡ଼ାଙ୍କୁ ତଡ଼ି ଦେବେ । ପୁଣି ମନ ତଳେ ମିଃ ବଲବିର ସିଂ, ମିଃ ନାୟାରଙ୍କ କଥା ମନେ ପଡ଼ିଯାଏ । ମମତାଙ୍କ ମୁହଁରେ ହସ ଫୁଟିଉଠେ ।

କେରଳି ସନ୍ତାନ ମିଃ ନାୟାର । ଓଡ଼ିଆ ଭଲଭାବେ କହି ଜାଣେ ନାହିଁ । ମିସେସ୍ ମମତାବୋଲି ଡ଼ାକିବାକୁ ଯାଇ ଦିନେ ମିସେସ୍ ମାମିନା ବୋଲି କହିଉଠିଥିଲା । ଆଉ ସେହି ଡ଼ାକଟା ମମତା ଦାସଙ୍କୁ ଏପରି ଭଲ ଲାଗିଥିଲା ଯେ ସେ ହସି ହସି କହିଥିଲେ, ଆପଣ ମୋତେ ଆଉ ଗୋଟିଏ ନୂତନ ନାମଦେଲେ ମିଃ ନାୟାର । ବେଶ୍ ଭଲ ଲାଗିଛି ମୋତେ ।

ମିଃ ବିଲବିର ସିଂ ମଧ୍ୟ ହସିହସି କହିଥିଲେ ଆଜ୍ ସେ ଅପ୍‌ଭି ହାମାରା ମିସେସ୍ ମାମିନା । ସେଦିନ ମମତା ଦାସ ଅନେକ ରାତିଯାଏ ଶୋଇ ପାରିନଥିଲେ । ମନତଳେ କେତେକଥା ଭାସି ଉଠିଥିଲା ।

ମନେପଡ଼େ ରମେନ ପାଖକୁ ଆସନ୍ତି ଅଶୋକ ପଟ୍ଟନାୟକ । ତାଙ୍କ କଲେଜର

ପ୍ରଫେସର । ଅଳ୍ପଦିନ ହେଲା ବଦଳି ହୋଇ ଏଠାକୁ ଆସିଛନ୍ତି । ଧନୀର ସନ୍ତାନ ମମତା ଦାସ ତାଙ୍କୁ ହସିହସି କୁହନ୍ତି, ତୁମେ ଆସିବ ଅଶୋକ । ତୁମ କଥା ଭାବିଲେ ମୋର ଜୀବନର ଅନେକ କିଛି ମୁଁ ଫେରିପାଏ । ତୁମେ କିଛି ବାହାରର ଲୋକ ନୁହଁ ।

ମମତା ଦାସ କିନ୍ତୁ ସାରା ଜୀବନରେ କ'ଣ ପାଇଲେ । ବିବାହ କରି ଦୁଇଟି ସନ୍ତାନର ଜନନୀ ହୋଇଥିଲେ । କିନ୍ତୁ ସ୍ୱାମୀ !-ଛି-ପୁରୁଷ ପୁଣି ନିଜ ସ୍ତ୍ରୀକୁ ନିଜର ସ୍ୱାର୍ଥପାଇଁ ଏମିତି ବ୍ୟବହାର କରିପାରେ । ବିବାହର ପ୍ରଥମ କେତେଦିନ ମଧ୍ୟରେ ମମତା ତାହା ବୁଝିପାରିଥିଲେ । ଆଉ ଘୃଣାରେ ମନଭରି ଯାଇଥିଲା । ସ୍ୱାମୀଙ୍କର ବ୍ୟବହାର ଭଲ ଲାଗି ନଥିଲା ।

କଣ୍ଟ୍ରାକ୍ଟର ଘନଶ୍ୟାମ ଶର୍ମା ସ୍ୱାମୀଙ୍କ ସହିତ ଘରକୁ ଆସୁଥିଲେ । ବେଳେ ବେଳେ ମମତା ଦାସଙ୍କ ରୂପର ପ୍ରଶଂସା କରି କହୁଥିଲେ, ମିଃ ଦାସ, ଆପଣ ବଡ଼ ଭାଗ୍ୟବାନ। ମମତା ହସିଲେ ମଧ୍ୟ ମନତଳେ ରାଗ ଜମି ଆସୁଥିଲା । ସ୍ୱାମୀଙ୍କ ପ୍ରତି ଘୃଣା ଆସୁଥିଲା । ଛି-ଛି, ଗୋଟାଏ ଅନ୍ୟ ପୁରୁଷ, ସ୍ୱାମୀ ଆଗରେ ମମତା ରୂପର ଆଲୋଚନା କରିବାଟାକୁ ସେ ଘୃଣା କରୁଥିଲେ । ନିଜର ସ୍ୱାମୀ ଯଦି ଏମିତି ଜୀବନରେ ଥରେ ମମତାର ରୂପନେଇ ଆଲୋଚନା କରିଥାଆନ୍ତେ, ତେବେ ମମତା ଚିରଦିନ ତାଙ୍କୁ ମଥାରେ ବସାଇ ରଖିଥାଆନ୍ତେ ।

ମମତା ଦାସଙ୍କର ମନେ ପଡ଼ିଯାଏ ବିବାହର ପ୍ରଥମ ଦୁଇଟି ବର୍ଷ କଥା । କେତେ ରଜନୀ ବିତି ଯାଇଛି ଆଖି ଲୁହରେ । ନା- ସେଗୁଡ଼ାକ ଏବେ ଭାବିଲେ କ'ଣ ହେବ । ମିଃ ଶର୍ମା ପ୍ରାୟ ତାଙ୍କ ଘରକୁ ଆସନ୍ତି । ରାତି ଅନେକଯାଏ ମମତାଙ୍କ ସ୍ୱାମୀ ମିଃ ଶର୍ମାଙ୍କ ସାଥୀରେ ବସି କ'ଣ କଥା ହୁଅନ୍ତି । ଏମିତି ଜହ୍ନ ରାତିରେ ମମତା ଦାସ କେତେଥର ସ୍ୱାମୀଙ୍କୁ ଅନୁରୋଧ କରିଛନ୍ତି । ଚାଲ ଛାତ ଉପରେ ବସି ଆମେ କଥା କହିବା; କିନ୍ତୁ ସ୍ୱାମୀଙ୍କର କୌଣସି ଆନ୍ତରିକତା ପାଉ ନଥିଲେ ।

ମିଃ ଦାସଙ୍କ ଅନୁପସ୍ଥିତିରେ ମଧ୍ୟ ମିଃ ଶର୍ମା ଆସୁଥିଲେ, ହସିହସି ଲୋଟି ଯାଉଥିଲେ । ମମତା ଦାସଙ୍କଠାରୁ ଗିଲାସେ ପାଣି ପିଇବା ବାହାନାରେ ହାତକୁହାତ ଛୁଆଁଇ ଦେଉଥିଲେ । ମମତା ସବୁ ବୁଝିପାରନ୍ତି । କେବଳ ସ୍ୱାମୀଙ୍କ ମୁହଁକୁ ଚାହିଁ କିଛି କହିପାରନ୍ତି ନାହିଁ ।

ରାଜୀବ ଓ ରମେନ ବଡ଼ ହେଲେ । କିନ୍ତୁ ମିଃ ଦାସ ଦିନକୁଦିନ ଘନଶ୍ୟାମ ଶର୍ମାଙ୍କ ସହିତ ଆହୁରି ତଳେଇ ଯାଇଥିଲେ । ମମତା ଦାସଙ୍କ ଠାରୁ ଦୂରରେ ରହିଲେ । ଆଉ ମମତା ମଧ୍ୟ ନିଜକୁ ଆସ୍ତେ ଆସ୍ତେ ଅଲାଗା କରି ନେଇଥିଲେ । ଆଜକୁ ପନ୍ଦରବର୍ଷ ହେବ ସ୍ୱାମୀଙ୍କ ପାଖରୁ ଅଲଗା ହୋଇ ଯାଇଛନ୍ତି । ନିଃସଙ୍ଗ ଜୀବନରେ ଟିକିଏ କଥା କହି ସମୟ କଟାଇବାପାଇଁ ଅଶୋକ ପଟ୍ଟନାୟକ, ମିଃ ବଲବିର ସିଂ, ମିଃ ନାୟାର, ମିଃ ମ୍ୟାଥଙ୍କୁ ମମତା ନିମନ୍ତ୍ରଣ କରନ୍ତି ଆଉ ହସି ହସି ସେମାନଙ୍କର ଅଭ୍ୟର୍ଥନା କରନ୍ତି । ଗଳ୍ପକରି

ଜଣଙ୍କ ପରେ ଜଣଙ୍କୁ ବିଦାୟ ଦେଉଦେଉ ରାତି ଦଶଟା ବାଜିଯାଏ । କ୍ଳାନ୍ତ ମନଟାକୁ ବିଛଣା ଉପରେ ଢ଼ାଳିଦେଇ ଭାବନ୍ତି ଏମାନେ କାହିଁକି ଆସନ୍ତି । ଖାଲି ସମୟ କଟାଇବାପାଇଁ ନା- ମମତା ଦାସର ମନତଳେ କ୍ଷତକୁ ପୂରଣ କରିବାଲାଗି ।

କ୍ଷଣକ ଲାଗି ମମତା ଦାସଙ୍କ ମନତଳେ କୁମାରୀ ଜୀବନର ଦିନଗୁଡ଼ାକ ପୁଣି ଭାସିଉଠେ । ଭାବନ୍ତି ସାରା ଜୀବନଟା ଧରି କ'ଣ ପାଇଲେ । ଯାହା ଚାହଁଥିଲେ ତାହା କ'ଣ ପାଇଲେ ।

ଘଡ଼ିକୁ ଚାହାନ୍ତି । ଆଉ ପନ୍ଦର ମିନିଟ ଅଛି ତିନିଟା ବାଜିବାକୁ । ଅଶୋକ ପଟ୍ଟନାୟକ ଆସିବ । ତାକୁ ଆଜି ରାତି ଅନେକ ଯାଏ ସେ ବସାଇ ରଖିବେ । ଅନେକ କିଛି ଆଜି କହିବେ । ସେ'ତ ଅନେକ କିଛି କୁହନ୍ତି; ହସି ହସି ଢ଼ଳିପଡ଼ନ୍ତି । ଅତୀତର କୁମାରୀ ଜୀବନକୁ ମନେପକାଇ ସମସ୍ତ ମନ ଦେଇ କେତେ କଥା କୁହନ୍ତି । କିନ୍ତୁ ଅଶୋକ ନୀରବ ହୋଇ ଶୁଣିଯା'ନ୍ତି । ମନତଳେ କ'ଣ ତେବେ ଅଶୋକଙ୍କର ମମତା ପ୍ରତି ଜ୍ୱାଳା ଅନୁଭବ ହୁଏ ନାହିଁ । ଅଶୋକ ପଟ୍ଟନାୟକ ହସି ହସି କୁହନ୍ତି ମିସେସ୍ ମାମିନା, ରମେନ୍ ଆସିଲେ ମୋତେ ଖବର ଦେବେ, ମୁଁ ପୁଣି ଆସିବି ।

ଗେଟ୍ ପାଖରେ ଠିଆ ହୋଇ ମମତା ଅନାନ୍ତି ଅଶୋକ ପଟ୍ଟନାୟକ ଲୁଚିଯିବାଯାଏ । ଭାବନ୍ତି କେବଳ କ'ଣ ରମେନ୍ ପାଇଁ ଅଶୋକ ଆସନ୍ତି, ମମତା ଦାସ ପାଖରେ ତାଙ୍କର କିଛି ଦରକାର ନାହିଁ ।

ବ୍ୟସ୍ତ ହୋଇ ଉଠନ୍ତି ମମତା ଦାସ । ପୁଣି ଘଡ଼କୁ ଦେଖନ୍ତି ।

ତିନିଟା ବାଜିଗଲାଣି, କାହିଁ ଅଶୋକ ତ ଆସିଲେ ନାହିଁ । ସନ୍ଧ୍ୟା ଛଅଟା ହେଲା । ମିଃ ନାୟାର ଆସନ୍ତି, କିନ୍ତୁ ମମତା ଦାସ ତାଙ୍କୁ ସୌଜନ୍ୟତା ଦୃଷ୍ଟିରୁ ନମସ୍କାର କରି କୁହନ୍ତି, ମୋ ଦେହ ଭଲ ନାହିଁ ମିଃ ନାୟାର୍ । ମୋତେ ଟିକିଏ ବିଶ୍ରାମ କରିବାକୁ ଦିଅନ୍ତୁ ।

ମିସେସ୍ ମାମିନାଙ୍କ ଦେହ ଖରାପ ଶୁଣି ଆସନ୍ତି ମିଃ ସିଂ ।

କିନ୍ତୁ ମାମିନା ଆହୁରି ନିଜକୁ ଅସୁସ୍ଥ ମନେ କରନ୍ତି । ଫେରି ଯାଆନ୍ତି ମିଃ ବଲବିର ସିଂ ।

ଅନେକ କିଛି କଥା ଯେପରି କହିବାକୁ ରହିଯାଏ ତାଙ୍କର । ମମତା ଦାସ ଦେଖନ୍ତି, ଆଉ ମନେ ମନେ ହସିଉଠି କୁହନ୍ତି ଟିକିଏ କଥା, ଟିକିଏ ସ୍ପର୍ଶ ପାଇଁ ଏମାନେ ଦଉଡ଼ି ଆସନ୍ତି । କିନ୍ତୁ ମମତା କ'ଣ କିଛି ପାଇଲେ, ନା-ନା, ସମସ୍ତେ ପ୍ରତାରକ, ସମସ୍ତ ଛଳନା ।

ରାତି ନଅଟା ହେଲା, ମମତା ଦାସଙ୍କ ମନ ତଳେ ସମସ୍ତ ଅଭିମାନ ପୁଞ୍ଜିଭୁତ ହୋଇଉଠିଲା । ପ୍ରକୃତରେ ଦୁନିଆରେ ସମସ୍ତେ ପ୍ରତାରକ, ସମସ୍ତେ ସ୍ୱାର୍ଥପର । ନିଜର ସ୍ୱାର୍ଥ ସମାଧାନ ହୋଇଗଲେ ସମସ୍ତେ ଏମିତି କରନ୍ତି ।

ହଠାତ୍ ଫୋନ୍ ବାଜିଉଠିଲା, ବିରକ୍ତ ହୋଇ ରିସିଭରଟା ଉଠାଇନେଲେ ମମତା ଦାସ୍ । ହ୍ୟାଲୋ- ମିସେସ୍ ମାମିନା କହୁଛି- କିଏ ଅଶୋକ !

ମୁହଁରେ ପୁଣି ହସ ଫୁଟିଉଠିଲା, କ'ଣ ହେଲା । କ'ଣ ତିନିଟା ବାଜି ନାହିଁ ତୁମର । ଫୋନ୍ ଆରପଟୁ ଉତ୍ତର ଆସିଲା ରମେନ୍‌ର ଆସିବାର ଥିଲା କ'ଣ ଆସିନାହିଁ ।

- ମମତା ଦାସଙ୍କ କଣ୍ଠରୁଦ୍ଧ ହୋଇଆସେ । କୁହନ୍ତି- ସେ ହୁଏତ ବର୍ତ୍ତମାନ ଆସିପାରେ । ତୁମେ ଆସ ଦୁହେଁ କଥାବାର୍ତ୍ତା ହେବା । ଯଦି ରମେନ୍ ଲାଷ୍ଟ ବସ୍‌ରେ ଆସିଯାଏ ତେବେ ତୁମର ମଧ୍ୟ ସାକ୍ଷାତ ହେବ । କ'ଣ କହିଲ ରାତି ଦଶଟା ବାଜିଗଲାଣି ।

ହସି ଉଠନ୍ତି ମମତା ଦାସ । ରିସିଭରଟା ଆହୁରି କାନ ପାଖରେ ଚାପିଧରି କୁହନ୍ତି- ନା ନା, ମୋତେ ରାତି କିଛି ବେଶି ହୋଇନାହିଁ । ତୁମେ ଆସ । ଏମିତି ପୁନେଇ ରାତି, ଉପରେ ବସି କଥାବାର୍ତ୍ତା ହେବା; କ'ଣ ଆସୁଛ ।

କିନ୍ତୁ ମମତା ଦାସଙ୍କ ମୁହଁରେ ବିଷର୍ଣ୍ଣତା ଦେଖାଯାଏ । ରିସିଭରଟା ଥୋଇ ଦିଅନ୍ତି । ଧୀରେ ଉଠିଆସି ଆଇନାପାଖରେ ଠିଆହୋଇ ନିଜର ରୂପକୁ ଦେଖନ୍ତି । ମଥାର ବାଳ ପାଚି ଆସିଲାଣି । ଆଖିର ଦୃଷ୍ଟି ପାଇଁ ଲେନସ ଦିଆ ଚଷମା ଦେଇଛନ୍ତି । ଧୀରେ ଧୀରେ ଆସି ଖଟ ଉପରେ ବସି ଭାବନ୍ତି, କି ଭୁଲ କରି ବସିଲେ ନିଜର ବୟସ ପ୍ରତି ସେ କୌଣସି ଦିନେ ତ ଥରେ ଭାବି ନାହାନ୍ତି । ତା' ହୋଇଥିଲେ ଏମିତି ଭୁଲ ସେ କରି ନଥାନ୍ତେ ।

ତକିଆ ଉପରେ ମୁହଁପୋତି ଦିଅନ୍ତି । ନା-ନା, ଏମିତି କେତେ ପୁନେଇ ଜହ୍ନର ବିଳାପ ସେ ଶୁଣିବେ । କେହି ଆସିବେ ନାହିଁ । ପଦେ କଥା କହିବେ ନାହିଁ । କାରଣ ସେଦିନର ମମତା ସାସମଲ ଆଜି ମିସେସ୍ ମାମିନା, ମେଜର ରାଜୀବର ମାଆ । ■